# HEMALATA

## ହେମଲତା ।

( ଗୋଟିଏ ଐତିହାସିକ ଉପନ୍ୟାସ )

ଆନ୍ଧ୍ରକବି ଶ୍ରୀ ଚିଲକମୂର୍ତ୍ତି ଲକ୍ଷ୍ମୀନୃସିଂହଙ୍କ ଅନୁମତି କ୍ରମେ

ଶ୍ରୀ ଦୀନବନ୍ଧୁ ପାଲ ବି. ଏ. ଙ୍କ

ଦ୍ୱାରା

ଅନୁବାଦିତ ଓ ପ୍ରକାଶିତ



BERHAMPORE

PRINTED AND PUBLISHED

BY

*SASHIBHUSAN RATH*

AT

THE 'ASHA' PRESS

1915

*Price, annas twelve only.*

Digitized by srujanika@gmail.com

# ଉପହାର

ପରମ ମାନନୀୟ, ଉତ୍କଳର ଖଣ୍ଡା ଅଂଶ ଭିରସାର ସ୍ୱାଧୀନ ଗଡ଼ାଧୀଶ୍ୱର
ଶ୍ରୀ ଶ୍ରୀ ଶ୍ରୀ କିଶୋର ଚନ୍ଦ୍ର ସାମନ୍ତସିଂହ ଦେବ ମହୋଦୟଙ୍କ

ଶ୍ରୀ ଚରଣ କମଳେଷୁ

ଶ୍ରୀମାନ୍ ମହୋଦୟ,

ସୌଭାଗ୍ୟ କ୍ରମେ ରାଜକାର୍ଯ୍ୟ ଶିକ୍ଷା ପ୍ରଦାନ କରିବା ସକାଶେ କିଛିଦିନ ମୁଁ ଶ୍ରୀଛାମୁଙ୍କ ଶିକ୍ଷା ଗୁରୁ ହୋଇଥିଲି । ପରେ ଭବଦୀୟ ଅନୁଗ୍ରହ ବଶରୁ କିଛିକାଳ ପାଇଁ ଦେୱାନ କାର୍ଯ୍ୟରେ ନିଯୁକ୍ତ ହେଲି । ଏହି ଉଭୟ କାର୍ଯ୍ୟ ପରିଚାଳନରେ ଅଧମ ମୋ' ପ୍ରତି ଯେଉଁ ସଦାଶୟତା ଓ ସରଳଭାବ ପ୍ରଦର୍ଶିତ କରିଅଛନ୍ତି ସେଥିଲାଗି ମୁଁ ଶ୍ରୀଛାମୁରେ ଚିର ଋଣୀ । ଏହି ଅତୁଳନୀୟ ଅନୁଗ୍ରହର କଥଞ୍ଚିତ୍ ପ୍ରତିଦାନ ସ୍ୱରୂପ ଶ୍ରୀଛାମୁରେ କିଛି ଭେଟି ଦେଇ ଋଣ ମୁକ୍ତ ହେବାର ଦୁରାଶା ପୋଷଣ କରିଅଛି । ମାଦୃଶ ବ୍ୟକ୍ତି ପକ୍ଷେ ଏତାଦୃଶ ଋଣ ଶୋଧିବାର ଆଶା ବିଡ଼ମ୍ବନା ମାତ୍ର । ଯାହାହେଉ କର୍ତ୍ତବ୍ୟ ଅନୁଲଂଘନୀୟ । ଯେଉଁ ସାର ପଦାର୍ଥ ଶ୍ରୀଛାମୁଙ୍କ ପ୍ରୀତି ଭାଜନ ହୋଇ ପାରିବ ତାହା କେବଳ ଭାରତୀଙ୍କ ଅକ୍ଷୟ ଭଣ୍ଡାରରେ ପ୍ରାପ୍ତବ୍ୟ । କିନ୍ତୁ ସେହି ପବିତ୍ର ଭଣ୍ଡାରରୁ ନିଜେ ଉପଯୁକ୍ତ ଭେଟି ଦ୍ରବ୍ୟ ସଂଗ୍ରହ କରି ଆଣିବା କ୍ଷମତା ଓ ଅବସର ନଥିବା ଯୋଗୁଁ ମୁଁ ବିଶେଷ ଚିନ୍ତିତ ଥିଲି । ସହସା ଜଣେ ଅନ୍ଧ୍ରକବିଙ୍କ ବିରଚିତ ସୁବିଖ୍ୟାତ ଐତିହାସିକ "ହେମଲତା" ଉପନ୍ୟାସ (ନଭେଲ) ଟି ମୋହର ଦୃଷ୍ଟି ଆକର୍ଷଣ କଲା । ଏହି ଅମୂଲ୍ୟ ରତ୍ନଟି ନାଗି ଆଣି ଜାତୀୟ ପରିଚ୍ଛଦରେ ସଜାଇ ଉପହାର ଦେବାକୁ ସ୍ଥିର କରି 'ହେମଲତା"ର ଉତ୍କଳାନୁବାଦରେ ପ୍ରବୃତ୍ତ ହେଲି । ଉତ୍କଳ ସାହିତ୍ୟରେ ଉପନ୍ୟାସ ସଂଖ୍ୟା ଅତି କମ । ବୃକ୍ଷ ବିହୀନ ଦେଶରେ ଶବ ତରୁକୁ ଲୋକେ ବଡ଼ ମଣନ୍ତି । ଏହି ନୀତିରେ ଉକ୍ତ ଉପନ୍ୟାସଟିର ଉତ୍କଳାନୁବାଦ ଶ୍ରୀଛାମୁଙ୍କ ଆଦରଣୀୟ ହେବାର ସମ୍ଭାବନା । ଅତଏବ ତାହା ଶ୍ରୀଛାମୁରେ ସବିନୟେ ଅର୍ପଣ କଲି । ସାଦରେ ଗ୍ରହଣ କଲେ କୃତାର୍ଥ ହେବି । ଏତଦ୍ଦ୍ୱାରା ଯଦି ଉତ୍କଳ ସାହିତ୍ୟର କିମ୍ବା ଜାତିର କିଛି ଉପକାର ହୁଏ ତେବେ ମୁଁ ଚରିତାର୍ଥ ହେବି ।

ଶ୍ରୀଛାମୁଙ୍କ ଆଶ୍ରିତ

ଶ୍ରୀ ଦୀନବନ୍ଧୁ ପାଳ ।

Digitized by srujanika@gmail.com



# ହେମଲତା ।

## ପ୍ରଥମ ଅଧ୍ୟାୟ ।



ଏକେ ସୂର୍ଯ୍ୟାସ୍ତ ସମୟରେ ନିଶାପୁ ବାସ୍ତ ପଥଧାନ ପୂର୍ବକ ଜଣେ ଭସ୍ମ ବହୁଶିଳ ଶ୍ରାନ୍ତି ଯମୁନାନଦୀ ଅଭିମୁଖେ ଯାତ୍ରା କରୁଥିଲେ । ସେ ଯେଉଁଠାରୁ ଆସିଲେ ବା କେଉଁଠାକୁ ଯିବେ ତାହା ଅଜ୍ଞାତ । ମାର୍ଗ ମଧ୍ୟରେ ଯେଉଁ ଯେଉଁ ବ୍ୟକ୍ତି ଉଚ୍ଛିଷ୍ଟପୃଟେ ତାହାଙ୍କୁ ପ୍ରଶ୍ନକରି କୌଣସି ଉତ୍ତର ପାଇନଥିଲେ । ଗ୍ରୀଷ୍ମଋତୁ ଯୋଗୁଁ ଏବଂ ବିଶେଷରେ ସେହିଦିନ ମଧ୍ୟାହ୍ନ ସମୟରେ ସ୍ୱତଃ ଜୀବ ଜନ୍ତୁଙ୍କ ଅସ୍ୱସ୍ତିକର ପ୍ରବଳ ପ୍ରଭଞ୍ଜନ ବହୁଥିବାରୁ ପାନ୍ଥ ସବିଶେଷ ଶ୍ରାନ୍ତ ହୋଇଥିଲେ । ତାହାଙ୍କ କ୍ଲାନ୍ତାବସ୍ଥା ଦେଖିଲେ ସେ ବହୁଦୂର ପ୍ରୟାଣ କରିଥିବାର ସ୍ପଷ୍ଟ ଜଣାଯାଉଥିଲା । ପ୍ରାୟ ଦ୍ୱାବିଂଶତି ବର୍ଷ ବୟସ୍କ ହୋଇଥିଲେ ହେଁ ସେ ତେତେ ବୟୋବୃଦ୍ଧ ଦିଶୁ ନଥିଲେ । ଅବୟବରେ ସେ ନାତିଦୀର୍ଘ ଏବଂ ନାତିଖର୍ବ । ଶରୀରର କାନ୍ତି ଶ୍ୟାମଳ । ସର୍ବଜନ ତାହାଙ୍କୁ ସୁନ୍ଦର ପୁରୁଷ ବୋଲି କହିବେ । ଆପାଦ ମସ୍ତକ ବସ୍ତ୍ରାବୃତ ଓ ସ୍କନ୍ଧସ୍ଥିତ ଯଜ୍ଞୋପବୀତ ବସ୍ତ୍ରାଚ୍ଛାଦିତ ଥିବାଯୋଗୁଁ ଦର୍ଶନମାତ୍ରେ ତାହାଙ୍କ କୁଳର ପରିଚୟ ମିଳିବା ଦୁଷ୍କର ହୋଇ-ଥିଲା । କିନ୍ତୁ ସେ ଉତ୍ତର ହିନ୍ଦୁସ୍ଥାନ ନିବାସୀ ଜଣେ ଦ୍ୱିଜତନୟ ସ୍ପଷ୍ଟ ଜଣାଯାଉ-ଥିଲେ । ତାଙ୍କ ସୂର୍ଯ୍ୟ-ତାପ-ଜନିତ ସ୍ୱେଦ ଶରୀରବାହି ଭସ୍ମ ସ୍ଥାନେ ସ୍ଥାନେ ଧୋଇ ଦେଇ ତାହାଙ୍କ ସ୍ୱାଭାବିକ ସୁନ୍ଦର ଲାବଣ୍ୟ ଦର୍ଶାଉଥିଲା । ଜଟା ଓ ଦାଢି ସେ

Digitized by srujanika@gmail.com

ବଟେ ଯୋଗୀ ବୋଲି ପରିଚୟ ଦେଉଥିଲେ ମାତ୍ର ଏହି ଅଳ୍ପ ବୟସ ପୂର୍ବ୍ବାକାର ଲକ୍ଷଣଥିବାରୁ ସେ ନବୀନ ବ୍ରହ୍ମଚାରୀ ବୋଲି ଦର୍ଶକେ ଅନୁମାନ କରିପାରୁ-ଥିଲେ । ସୁତୀକ୍ଷ୍ଣ ସୂର୍ଯ୍ୟରଶ୍ମି ଦେଇ ଗଲେ ଗୋଡ଼ ପୋଡ଼ି ଯାଉଥିଲା ଓ ମୁଣ୍ଡ ଫାଟି ଯାଉଥିଲା କିନ୍ତୁ ସେ ଉପାନତ ବିନା ଅନାୟାସ ବ୍ୟବହାର ନକରି ଦ୍ରୁତପାଦେ ପ୍ରସ୍ଥାନ କରିଥିଲେ । ବୈରାଗୀଙ୍କ ମୂଳ ଲକ୍ଷଣ; କିନ୍ତୁ ସାଧାରଣ ଯୋଗୀଙ୍କ ପରି ଗଞ୍ଜେଇ କିମ୍ବା ଚିଲମ ଭକ୍ତ ସେ ନଥିଲେ । ସେ ଯମୁନା ତୀରସ୍ଥ ମଥୁରାପୁର ନିକଟରେ ଅପରାହ୍ନ ଚତୁର୍ଥ ପ୍ରହରାରମ୍ଭରେ ପହଞ୍ଚିଥିଲେ ମାତ୍ର କାରଣ ବିଶେଷରୁ ନଗରକୁ ନଯାଇ ତାହାର ଏକ କୋଶ ଦୂରସ୍ଥ ଏକ ରସାଳ ବନରେ ଲୁଚି ରହିଲେ ଏବଂ ସୂର୍ଯ୍ୟାସ୍ତ ହେବାପରେ ଉକ୍ତ ସ୍ଥାନ ପରିତ୍ୟାଗକରି ଘୋର ଅନ୍ଧାରଥିବା ଯୋଗୁଁ କାହାରି ଦୃଷ୍ଟିରେ ନପଡ଼ି ଯମୁନା ତୀରାଭିମୁଖେ ଗମନ କଲେ । ନଦୀ ତୀରରେ ପ୍ରବେଶ କରିବାମାତ୍ରେ କିଛି ମୂଳ ଫଳ ଖାଇ ଶୀତଳ ଜଳରେ ହସ୍ତପଦ ପ୍ରକ୍ଷାଳନ ଓ ମୁଖ ଧୌତକରି, ସେହି ନିର୍ମ୍ମଳୋଦକରୁ ଦୁଇକର ଅଞ୍ଜଳି ପାନକରି ବସନ୍ତୁ ଶୁଦ୍ଧ ବୈଦିକ ସନ୍ଧ୍ୟାରେ ବନ୍ଦନା ସମାପିଲେ । ସେହି ସମୟରେ ଯମୁନା ତଟ ବନ୍ୟ ସମ୍ମିଳିତ ମଳୟ ମାରୁତ ସ୍ପର୍ଶରେ ପ୍ରିୟସଖିଙ୍କ ହସ୍ତ ସ୍ପର୍ଶ ସଦୃଶ, ଅମିତ ପଥଶ୍ରାନ୍ତ ପଥିକ ଶରୀର ସ୍ପର୍ଶକରି ତାହାଙ୍କ ଶ୍ରମ ଅପନୋଦନ କଲା । ପାନ୍ଥ ଇଷ୍ଟଦେବଙ୍କ ଓ ଦୈବଦତ୍ତ ସୌଖ୍ୟ ପରବଶହୋଇ ଚକ୍ଷୁ ମୁଦ୍ରିତ କରି, "ହାୟ ! ହାୟ !" କହି ସକଳ କଷ୍ଟ ବିସ୍ମୃତ ହେଲେ । ସେହି ସମୟରେ ନଭୋମଣ୍ଡଳରେ ଅନନ୍ତ କୋଟି ନକ୍ଷତ୍ର ଗଣ ଜକ୍ ଜକ୍ ହୋଇ ହୀରାଖଣ୍ଡସଦୃଶ ପ୍ରକାଶ ପାଉଥିଲେ । ନିର୍ଜ୍ଜନସ୍ଥାନ ଯୋଗୁଁ ଉଲ୍ଲୂକାଦି ନିଶାଚରଙ୍କ ଡାକ ବ୍ୟତୀତ ଅନ୍ୟ କୌଣସି ଧ୍ୱନି କର୍ଣ୍ଣଗୋଚର ହେଉନଥିଲା । ଏହି ନୀରବ ପ୍ରଦେଶରେ ଉପବିଷ୍ଟ ହେବାମାତ୍ରେ ପୂର୍ବ ବୃତ୍ତାନ୍ତ ସ୍ମରଣକରି ସେ ଚିନ୍ତାରେ ମଗ୍ନହେଲେ । "ରେ, ବିଧାତା, କେତେ କଷ୍ଟ ଦେଲୁ । ହାୟ ! ହାୟ ! ଏହି ଯବନ ମାନଙ୍କର କି ଦୌରାତ୍ମ୍ୟ ? ଏହି ମହାପାପୀ ଦୁର୍ବୃତ୍ତ କି କେବେ ବିନଷ୍ଟ ହେବନାହିଁ !" ଏହିରୂପ ମନେ ମନେ ଭାବି, ଅନବରତ ନୟନାଶ୍ରୁ ବିସ-ର୍ଜ୍ଜନକରି ଆକାଶ ପ୍ରତି ଦୃଷ୍ଟି ନିକ୍ଷେପ କରନ୍ତେ, ଖଣ୍ଡେ କ୍ଷୁଦ୍ର ମେଘ ଦୃଷ୍ଟହେଲା । ସେହି ମେଘ ଖଣ୍ଡ କ୍ରମଶଃ ବିସ୍ତାରିତହୋଇ ସମସ୍ତ ଆକାଶ ଆବୃତକଲା । ତାହା

Digitized by srujanika@gmail.com

ସଙ୍ଗେ ସଙ୍ଗେ ପ୍ରବଳ ପ୍ରଭଞ୍ଜନ ବହିବା ଯୋଗୁଁ ଅବଶ୍ୟ ବର୍ଷା ହେବ ବୋଲି ଜାଣି "କେଉଁ ସ୍ଥାନରେ ଆଶ୍ରୟ ନେବେ" ଏହି ବିଷୟରେ ସେ ବିଜ୍ଞ-ଶାସ୍ତ୍ରୀ ଯୋଗୀ ଭାବନା କରି ବସିଲେ । କିୟତ୍ କାଳ ଚର୍ଚ୍ଚଣା କରନ୍ତେ ଯେଉଁଦିନ ଅପରାହ୍ନ ସେ ଲୁଚି ରହିଥିବା କପାଳ ବନ ଓ ଯମୁନାନଦୀ ମଧ୍ୟପ୍ରଦେଶରେ ଗୋଟିଏ ଭଗ୍ନ ମନ୍ଦିର ଥିବାର ତାହାଙ୍କ ସ୍ମରଣ ହେଲା ଏବଂ ସେହି ଆଳୟାଭିମୁଖେ ପ୍ରସ୍ଥାନ କଲେ । ଅଳ୍ପ ନିକଟବର୍ତ୍ତୀ ହେବରୁ ପଥିକ ଅତି ଶୀଘ୍ର ସେଠାରେ ପହୁଞ୍ଚିଲେ । ମାତ୍ର ପ୍ରସ୍ଥାନାରମ୍ଭ ପୂର୍ବେ ବର୍ଷାରମ୍ଭ ହୋଇଥିବାରୁ ପରିଧେୟ ବସ୍ତ୍ରାଦି ଆର୍ଦ୍ର ହୋଇ ସୂର୍ଯ୍ୟ ରଶ୍ମି ପ୍ରତପ୍ତ ପାନ୍ଥ-ଶରୀର ଶୀତଳ ଜଳସ୍ପର୍ଶରେ ଶିହରିତ ହେଲା । ଯେଉଁ ସମୟର ଘଟଣା ବର୍ଣ୍ଣିତ ହେଉଅଛି ସେହି ସମୟରେ ସେହି ଉନ୍ନତ ଦେବାଳୟଟି ଜଙ୍ଗଲାକୀର୍ଣ୍ଣ ହୋଇଯାଇଥିଲା । ୧୦୧୮ ଖ୍ରୀଷ୍ଟାବ୍ଦରେ ଗଜନୀ ମହମ୍ମଦ ହିନ୍ଦୁ ଦେଶ ଯେତେ ଜୟ ଯାତ୍ରାକର ଭାରତର ପ୍ରସିଦ୍ଧ ପୁଣ୍ୟକ୍ଷେତ୍ର ମଥୁରା ନଗର ଓ ତତ୍ସ୍ଥ ଦେବାଳୟମାନ ସ୍ୱାଧୀନକର ଦେବବିଗ୍ରହ ଭଗ୍ନ ଓ ମନ୍ଦିରଗୁଡ଼ିକୁ ଲୁଣ୍ଠିବାକୁ କରିଥିଲେ । ଉପରୋକ୍ତ ଦେବାଳୟ ମାତ୍ର ନଗର ବହିର୍ଭାଗରେ ଥିବାଯୋଗୁଁ ମ୍ଲେଚ୍ଛପତି ହସ୍ତରେ ଧ୍ୱଂସ ପ୍ରାପ୍ତ ହୋଇ ପାରିନଥିଲା । ତାହାଙ୍କ ସେନାପତିମାନେ ଛଦ୍ମଧ୍ୱସ୍ତ କରିବ ମାତ୍ର ବିନଷ୍ଟକର ମନ୍ଦିରଟିକୁ ଆବାସ ସ୍ୱରୂପ ବ୍ୟବହାର କରୁ-ଥିଲେ । ସେହି ଅବଧି ଉକ୍ତ ଦେବାଳୟ ଶିଳା ବିଗ୍ରହ ଶୂନ୍ୟ ହେଲେ ସୁଦ୍ଧା ଗ୍ରୀଷ୍ମ-କାଳରେ ମନୁଷ୍ୟ ବିଗ୍ରହରେ ପରିପୂର୍ଣ୍ଣ ଥାଏ । ଦୂର ଦେଶାଗତ ଏକାକୀ ଓ ଦ୍ରବ୍ୟବାହୀ ପଥିକ ଓ ବଣିକ ଗଣଙ୍କୁ ଲୁଣ୍ଠନ ଓ ନିର୍ଦ୍ଦୋଷୀ ଅବଳାଙ୍କୁ ବଳାତ୍କାରେ ଧରି ସେମାନଙ୍କ ମାନଭଙ୍ଗ କରିବା, ଦୁର୍ଦ୍ଧର୍ଷ ଚୋର ଓ ଦସ୍ୟୁମାନଙ୍କ ପାଇଁ ସେହି ଦେବାଳୟଟି ଶରଣାଳୟ ହୋଇଥିଲା । ଅତଏବ ସାୟଂକାଳ ପରେ ମଥୁରା ନଗରବାସୀମାନେ ସେହି ଆଳୟ ଆଡ଼କୁ ଯାଆନ୍ତି ନାହିଁ । ଅଥବା ଗଲେ ନିରାପଦରେ ଫେରିଆସନ୍ତି ନାହିଁ । କେବେ ମୁର୍ଦ୍ଦାର, କେବେ ମୁର୍ଦ୍ଦାର ଯୋଗୁ ଦୁର୍ଗନ୍ଧ, କେବେ କେବେ ବା ମନୁଷ୍ୟମାନଙ୍କ ପରିହିତ ବସ୍ତ୍ର, ଲଗୁଡ଼ ଇତ୍ୟାଦି ଉକ୍ତ ଦେବାଳୟ ନିକଟରେ ଦେଖାଯାଉଥିବାରୁ ଜନସାଧାରଣ ସେହି ମନ୍ଦିର ଆଡ଼କୁ ଯାଉନଥିଲେ । ଏହି ମନ୍ଦିର ଚତୁର୍ଦ୍ଦିଗରେ ଉନ୍ନତ ଓ ଘନ ବୃକ୍ଷମାନ ଥିବା-ଯୋଗୁଁ ଚୋରମାନଙ୍କ ବାଞ୍ଛିତ ସ୍ଥାନ ହୋଇଥିଲା । ଉକ୍ତ ଦେବାଳୟରେ ସୁମଧୁର

Digitized by srujanika@gmail.com

ମୁଘଲୀବାଦର ଓ ମନୋମୁଗ୍ଧକର ନାଟ୍ୟ ଅଭିନେତା ଏକ କୃଷ୍ଣମୂର୍ତ୍ତି ସ୍ଥାପିତ ଥିବାକଥା ମଧ୍ୟସ୍ଥବାସି ବୃଦ୍ଧମାନେ କହନ୍ତି । ଦୁଷ୍ଟଙ୍କ କର୍ତ୍ତୃକ ଉପଦ୍ରବ ଓ କାଳର କରାଳ ଅପାର ପ୍ରତିଘାତ ଯୋଗୁଁ ଦେବାଳୟଟି ବର୍ତ୍ତମାନ ଏକାବେଳକେ ନଷ୍ଟ । କଥିତ ସମୟରେ ପ୍ରଧାନ ମନ୍ଦିରଟି ଛଡ଼ା ଅନ୍ୟ କିଛି ସେଠାରେ ନଥିଲା । ତାହା ସ୍ୱଭାବତଃ ଅନ୍ଧକାରମୟ । ଏବଂ ସେହିଦିନ ମେଘାଚ୍ଛନ୍ନ ହେତୁ ଦଶଗୁଣ ଅଧିକ ଅନ୍ଧକାର ହୋଇଥିଲା । ଅସ୍ମମାନଙ୍କ ପଥିକ ଉଦାଲବା ଖଣ୍ଡ ଶୁଖାଇ, ଆନ୍ତ୍ର ଶୁଷ୍କବସ୍ତ୍ରରେ ପରିଚ୍ଛନ୍ନ ହୋଇ ସେହି ଭୟଙ୍କର ଗୁହାସମ ଦେବାଳୟରେ ପ୍ରବେଶ କରିବାକୁ ଶଙ୍କିତ ହେଲେ, କିନ୍ତୁ ଶୀତ ବାଧା ସହି ନପାରି ହାତ ତାଳି ମାଣ୍ଡ ମାତ୍ର ଭିତରେ ପ୍ରବେଶ କଲେ ଓ ପୂର୍ବେ ଦେବବିଗ୍ରହାର୍ଥେ ନିର୍ମିତ ପୀଠ ସ୍ଥାନରେ ଉପବେଶନ କଲେ । ସେହି ସ୍ଥାନରେ ବସି ତାହାଙ୍କ ପୂର୍ବାଶ୍ରମ ସମ୍ବ-ନ୍ଧୀୟ ବୃତ୍ତାନ୍ତ ବିଷୟ ଚିନ୍ତା କରୁଁ କରୁଁ ତନ୍ଦ୍ରାମଗ୍ନ ହେଲେ । ଇତ୍ୟବସରରେ ମେଘ ଗର୍ଜନ ପ୍ରଦେଶରେ ମନୁଷ୍ୟମାନଙ୍କ ମୁଖ ଧ୍ୱନି ସହସା ତାହାଙ୍କ କର୍ଣ୍ଣ-ଗୋଚର ହୋଇ ତାହାଙ୍କ ତନ୍ଦ୍ରା ସମାପ୍ୟ ଭଗ୍ନ କଲା । ମନୁଷ୍ୟ ଧ୍ୱନି ହେବାରୁ ସତ୍ୟ କି ମିଥ୍ୟା ଜାଣିବାକୁ ତର୍କଣା କରୁଁ କରୁଁ ଦୁଇଜଣ ପୁରୁଷ ଅନ୍ଧାରରେ ହାତ୍ସ୍ଥାନ ଦୁଇଗୋଟି ଖଡ୍ଗ ଧାରଣ କରି ଉକ୍ତ ଆଳୟର ଦ୍ୱାରଦେଶରେ ଉପସ୍ଥିତ ହେଲେ । ତେତେବେଳକୁ ବର୍ଷା ଉଣା ହୋଇଯାଇ ଥିବାରୁ ସେମା-ନଙ୍କ ବସନ ଆର୍ଦ୍ର ହୋଇନଥିଲା । ହସ୍ତସ୍ଥିତ ଖଡ୍ଗ ବାଡ଼ିକୁ ଆଉଜାଇ, ଦ୍ୱାର-ଦେଶରେ ଠିଆହୋଇ, ଦେହ ପୋଛାପୋଛି ହୋଇ, ନୀରବରେ ଯେମନ୍ତ କାହାକୁ ଅପେକ୍ଷା କରୁଥିଲେ । ଏହିରୂପ କେତେକ୍ଷଣ ଅପେକ୍ଷା କରି ଉଭୟେ ଭିତରେ ପ୍ରବେଶ କଲେ । ଦେଖାଗଲା ସେଥିରୁ ଜଣେ ମହାସ୍ଥୂଳ୍ୟ ଅନ୍ୟଜଣକ ମଧ୍ୟମାୟୁ, ପଠାଣର ସର୍ଦ୍ଦାର, ଶ୍ମଶ୍ରୁଯୁକ୍ତ ଦାନ୍ତ ଓ ବଡ଼ ଆଖି ଦୀର୍ଘ କୁଟିଳ ଚକ୍ଷୁ । ତାହାର ବିକଟାଳ ବଦନ ସନ୍ଦର୍ଶନ କଲେ ମନରେ ଭୟ ଜନ୍ମୁଥିଲା ଓ କରୁଣ ଦୟାର ଭାବନା ସୁଦ୍ଧା ତାହାଠାରେ ନଥିବାର ସ୍ପଷ୍ଟ ଜଣାଯାଉଥିଲା । ମହାତ୍ମ୍ୟର ସମ୍ଭ୍ରାନ୍ତ ବଂଶୋଦ୍ଭବ ହେଲେ ସୁଦ୍ଧା ଦାନ କରିବାରୁ ଧନ ଧାନ୍ୟ ବଞ୍ଚିତ ହୋଇ ଦୁର୍ଭାଗ୍ୟବଶତଃ ସ୍ୱଭାବ ପୂର୍ବକ ଦୁର୍ଜ୍ଜନ ମାର୍ଗ ଅବଲମ୍ବନ କରିଅଛି; କିନ୍ତୁ ମୁଖ-ଶ୍ରୀରୁ କିଛି ଦୟାଶୀଳ ପରି ଦୃଷ୍ଟ ହେଉଥିଲା । ଶୌର୍ଯ୍ୟ ଓ ଜନହୃଦୟ

Digitized by srujanika@gmail.com

ସ୍ୱାର୍ଥ ସାଧନ କରିବାରେ ମନୁଷ୍ୟଙ୍କର କୌଣସି ରୋକ ନାହିଁ । ଏତତ୍ପୂର୍ବେ ବାଘକୁ ଅଉଡାଇ ରଖିଥିବା ଗଣ୍ଡ ଉପରେ ଧର ମନ୍ଦିରର ଦ୍ୱାର ଦେଶରେ ବସି ଯେଉଁମାନେ କୌଣସି ବିଷୟରେ ଆଲୋଚନା କରୁଥିଲେ । ଏମନ୍ତ ସମୟରେ ମନ୍ଦିରଦ୍ୱାରୁ ମହାନ୍ତଙ୍କ ସ୍ତ୍ରୀପୁରୁ ଶବ୍ଦ ହେଲା ।

“ନନ୍ଦ ! ବାଳକ ଏତେବେଳ ପର୍ଯ୍ୟନ୍ତ ନଆସିଲା କାହିଁକି ? ତାହାକୁ ହାଟରେ କିଏ ଧରି ରଖିଲା ନା କଣ” ?

ନନ୍ଦ—ଗୃହସ୍ୱାମିନି ! ତୁମ୍ଭେ ବ୍ୟସ୍ତ ହେଉଛ ? ଆମ୍ଭର ବାଳକ ଏତତ୍ପୂର୍ବେ କେବେ କାହା ହାତରେ ଧରା ପଡ଼ିନାହିଁ । ସେ ଜଣେ ବେଦାନ୍ତିକ । ବୋଧହୁଏ କୁ ଚାହା ଛାଡ଼ୁନା ।

ଭୁବନ—ହଁ ; ମୁଁ ଜାଣେ ସେଥିପାଇଁ ଅତ୍ୟର୍ଥ ଆମ୍ଭ ଉତ୍ପ-ତ୍ତିଙ୍କ ଭୟ ନାହିଁ ଓ ଆମ୍ଭ ହୃଦୟ ସଦାରେ ପଡ଼ୁନାହିଁ ।

ନନ୍ଦ—ଅମ୍ଭମାନଙ୍କ କର୍ଣ୍ଣ ରତ୍ନମାନଙ୍କ ଅସଭ୍ୟ ଚକ୍ରବର୍ତ୍ତୀଙ୍କ ଠାରେ ଉଚ୍ଚ କର୍ମଚାରୀ ଥିବାଯାଏଁ ଆମ୍ଭର କାହାପ୍ରତି ଶଙ୍କା ନାହିଁ । ସେ କୁଶଳରେ ଅଛୁ ଏହା ହିଁ କାମନା ।

ଭୁବନ—ଗତ ରାତ୍ର ସ୍ତ୍ରୀମାନଙ୍କ ଲୁଣ୍ଠନରେ ମିଳିଥିବା ଭୂଷଣାଦିକୁ ଆମ୍ଭମାନଙ୍କୁ କେବେ ଦେବାକୁ ଅଜ୍ଞା ହେଲେ ?

ନନ୍ଦ—ଯାହା ଦେବେ ତାହା ନେବା ।

ଭୁବନ—ହଉ, ହେଲେ ସେଦିନ ମନୁଷ୍ୟ ହାଣିଲାପରି କୁ ଆଉ କେବେ ହାଣିନାହୁଁ । ଏଣେ ସ୍ନେହରେ ହୁଙ୍କାରନ୍ତି । ବାହାବା ! ସାବାସ୍ ! ସେପରି ସମସ୍ତ ଅଉ ମିଳିବ ନାହିଁ ।

ନନ୍ଦ—ତାହା ସତ୍ୟ କହୁଛ । ମାଧବ ପୂର୍ବେ ଗ୍ରାମବାସୀ ଓ ଅପରାଜିତ ଆକ୍ରମଣ କଲାବେଳେ ଯଥା ଦାକ୍ଷିଣ୍ୟ ଦେଖାଇ ମୁଁ ଯେଉଁରୂପେ ସ୍ତ୍ରୀ ଓ ଶିଶୁମାନଙ୍କୁ ବଧ କରିଥିଲି ସେଥିପାଇଁ ତୁ ଦେଖିନାହୁଁ ।

ଏହିରୂପ ସମ୍ଭାଷଣ ଶ୍ରବଣକରି ଅଳ୍ପ ମଧ୍ୟରେ ସୁଖରେ ଉପବିଷ୍ଟ ଉକ୍ତ ଯାତ୍ରୀ ଭୟରେ କମ୍ପମାନହୋଇ କିଂକର୍ତ୍ତବ୍ୟବିମୂଢ଼ହୋଇ ରହିଲେ । କଥୋପ-କଥନରୁ ସେମାନେ ଭୀଷଣ ନରହତ୍ୟାକାରୀ ବୋଲି ସେ ଜାଣିପାରିଲେ ।

Digitized by srujanika@gmail.com

ଅତ୍ୟାପ୍ତୀ ଦ୍ରବ୍ୟ ପଥିକଙ୍କୁ ନଦେଖି ସେମାନେ ନିଜ ଇଚ୍ଛାନୁ ଗୁପ୍ତକଥାମାନ ପ୍ରକାଶ କରୁଥିଲେ । ସେହି ସମୟରେ ନନ୍ଦ ଟିକିଏ ଗଞ୍ଜାଇ ଖାଇବାକୁ ଇଚ୍ଛା-କରି ନିଜ ଅଁଟାରୁ, ଚକମକି ପଥର ଓ ଲୌହ ବାହାରକରି, ପରସ୍ପର ଘର୍ଷଣ-ପୂର୍ବକ ଅଗ୍ନି ବାହାରକରି, ଗଞ୍ଜାଇ ଚିଲମ ଲଗାଇଲା । ଏବଂ ଦମ ନେଇ ଚିଲିମ ଗୁଲାମ ହାତକୁ ବଢ଼ାଇଦେଲା । ଏହି ଅଗ୍ନିର ଆଲୁଅରେ ଗୁଲାମ ସେହି ଝଲଷୁ ମଧ୍ୟରେ ମନୁଷ୍ୟ ଜଣେ ଥିବାର ଅନୁମାନକରି ସେହି ବିଷୟ ସଙ୍ଗୀର କାନରେ କହିଲା । ତତ୍ପରେ କୂରଗୁଣ ତରିଷ୍ଣ ନନ୍ଦ ଗଞ୍ଜାଇନିଶା ଲଗିବା ଅବଧି ତାଙ୍କ ସର୍ପ ପରି ଉଠି ପାନ୍ଥଆଡ଼କୁ ଅଗ୍ରସର ହୁଅନ୍ତେ ଗୁଲାମ ତାହାର ପଶ୍ଚାତ୍-ଗାମୀ ହେଲା । ଉପୃରବର୍ଣ୍ଣିତ ପାନ୍ଥ ଏହି ଦୁରାତ୍ମାମାନଙ୍କ ଆଗମନ ଦେଖି ତାହାର ଭୟ ଭୟାନକହୋଇ ଉନ୍ନତ ସ୍ଥାନରୁ ତଳକୁ ଗଡ଼ିପଡ଼ିଲେ । ତାହାଙ୍କୁ ଦେଖି ନନ୍ଦ ଓ ଗୁଲାମ ଆଶ୍ଚର୍ଯ୍ୟାନ୍ୱିତ-ହୋଇ ନିମ୍ନ ପ୍ରକାର ସମ୍ଭାଷଣ କଲେ :—

ନନ୍ଦ—ହଇରେ ! ଏ କିଏ ?

ଗୁଲାମ—ନେଉଟାଣି ! ଏ ଆମ୍ଭର ଗୋପନୀୟ ବିଷୟ ସବୁ ଶୁଣି ପ୍ରକାଶ-କରିବାକୁ ଇଚ୍ଛା କରିଥିବାର ଲେଖ ।

ନନ୍ଦ—ଏ ଚଣ୍ଡାଳକୁ ଏବେ କରିବା କଣ ? କାହିଁ ; ଖଣ୍ଡାଟା ଏଣେ ଦେଲୁ ।

ଗୁଲାମ—ବାଟିରେ ମାରନାହିଁ ; ଏପରି କରିବା ( ଗ୍ରନ୍ଥରେ କର୍ଣ୍ଣରେ କହିଲି ) ସେମାନେ ଅଳ୍ପକାଳ ଗୋପନରେ କଥୋପକଥନକରି ସେହି ଜୀବର ଓ ହାତ ଗୋଡ଼ ପାନ୍ଥ ପୁଣ୍ୟରେ ଲୁଗା ବାନ୍ଧି ଉର୍ଦ୍ଧ୍ୱକରି, ଜଣେ ମୁଣ୍ଡ ଅପରଜଣେ ଗୋଡ଼ଧରି ବହିନେଇ, ସେ କେତେ ଛଟପଟ ହେଲେ ସୁଦ୍ଧା ତାହାଙ୍କୁ ନଛାଡ଼ି ଝଟଟରକୁ ନେଇ, ଗଙ୍ଗାର ଜଳପର୍ଯ୍ୟନ୍ତ ଯାଇ "ମକରର ଗଣ୍ଡିପିଲ"; ବୋଲି ଗଭୀର ଜଳରେ ବୁଡ଼ାଇଦେଲେ । ତଦୁତ୍ତାରୁ ସେ ଦୁଇଜଣ ଦେବାଳୟକୁ ଫେରି ଆସି, ତାହାଙ୍କ ନିକଟରୁ ଶୋଭା, ଚନ୍ଦ୍ର କେତେକ ପଦାର୍ଥ ସଂଗ୍ରହକରି, ପ୍ରିୟମିତ୍ର କାଳିଆ ଅଛି ଅଛିନାହିଁ ବୋଲି ସ୍ଥିରକରି, ସେସ୍ଥାନରୁ ପ୍ରସ୍ଥାନ କଲେ ।

## ଦ୍ୱିତୀୟ ଅଧ୍ୟାୟ ।

---

ଆଗ୍ରା ନଗରର ୧୫ ମାଇଲ ଦୂରରେ "ଧାଲ" ନାମକ ଗୋଟିଏ କ୍ଷୁଦ୍ର ଗ୍ରାମ ଅଛି । ପାର୍ଶ୍ୱବର୍ତ୍ତୀ ଭୂଭାଗର ଏହି ଗ୍ରାମଟି ପ୍ରଧାନ ନଗରରୂପେ ଗଣ୍ୟ ହେବାରୁ ସେଠାରେ ଜଣେ ପ୍ରତିନିଧିଙ୍କୁ ରଖାଇ, ତାହାଙ୍କୁ ସର୍ବାଧିକାର ପ୍ରଦାନ ପୂର୍ବକ ଚକ୍ରବର୍ତ୍ତୀ ଅଲ୍ଲାଉଦ୍ଦୀନ ସେହି ଦେଶ ସମସ୍ତ ପରିପାଳନ କରୁଥିଲେ । ରହମାନ୍ ଖାନ୍ "ଧାଲ" ସର୍କାରଙ୍କର ତାତ୍କାଳିକ ଫଉଜଦାର ଥିଲେ । ପ୍ରଥମେ ସେ ପାରସ୍ୟ ଦେଶାଗତ ଜଣେ ସାଧାରଣ ବ୍ୟକ୍ତି । ନିଜର ଗୂଢ ସ୍ତୋକ ପାଟନୈପୁଣ୍ୟ ଯୋଗୁଁ ଓ ତୀକ୍ଷ୍ଣତର ବୁଦ୍ଧିବଳରୁ ଚକ୍ରବର୍ତ୍ତୀଙ୍କ ପ୍ରିୟ ଜନଙ୍କ ମଧ୍ୟରେ ଗଣନୀୟ ଓ ତାତ୍କାଳୀନ ଉଚ୍ଚ ପଦାରୂଢ ହୋଇ, ପରିଶେଷରେ ଏହି ଅଧିକାର ପ୍ରାପ୍ତ ହେବାର ଛଅବର୍ଷ ହେଲା । ଅଧିକାର ପାଇବା ଦିନରୁ ସ୍ୱେଚ୍ଛାଚାରୀ ଓ ଉଦ୍ଧତ ହୋଇ, ରାଜକୀୟ ଅନ୍ୟାନ୍ୟ କର୍ମଚାରୀଙ୍କ ପରି ଅନାଦର କରି, ସ୍ୱାଧୀନ ପ୍ରଜାପୁଞ୍ଜର ନାନାବିଧ କଷ୍ଟ ଜନ୍ମାଇ ସର୍ବସାଧାରଣଙ୍କ ଅପ୍ରିୟ ହେଲେ । ଅନ୍ତଃପୁର ସ୍ତ୍ରୀମାନଙ୍କୁ ବଳାତ୍କାରରେ ଧରି ଆଣିବା, ଦୁଷ୍କର୍ମୀଙ୍କ ଦ୍ୱାରା ଚୌର୍ଯ୍ୟାଦି କାର୍ଯ୍ୟ କରାଇବା ଇତ୍ୟାଦି ଦୁଷ୍କର୍ମ ଧୁରନ୍ଧର ହୋଇ, ଅହୋରାତ୍ର ମଦ୍ୟପାନ ଓ ରମଣୀମାନଙ୍କ ସହବାସରେ କାଳଯାପନ କରିବାକୁ ଲାଗିଲେ । 'ଧାଲ' କ୍ଷୁଦ୍ର ଗ୍ରାମହେତୁ, ତତ୍ସ୍ଥ ରାଜକର୍ମଚାରୀଙ୍କ ମଧ୍ୟରେ ଖାନ୍ ଉଚ୍ଚପଦକର୍ମଚାରୀ ଥିବାଯୋଗୁଁ, ଜନସାଧାରଣ ତାହାଙ୍କୁ ନବାବ୍ ବୋଲି କହି ତାହାଙ୍କ କ୍ଷମତାର ଦାସ ହେବା ସକାଶେ ଯତ୍ନକରୁଥାନ୍ତି । ଏପରି ନହେବ ବା କାହିଁକି ? ପରନ୍ତୁ ଖାନ୍ ସାହେବଙ୍କ ପରିପାଳନରେ ପ୍ରଜାପୁଞ୍ଜ ଦଗ୍ଧ ଓ ଅନ୍ନବସ୍ତ୍ର ବଞ୍ଚିତ ହୋଇ, ସର୍ବଦା ତାହାଙ୍କ ପରଲୋକ ଗମନ କାଳ ନିରୀକ୍ଷଣ କରୁଥିଲେ ଏବଂ ସାଧ୍ୟହେଲେ ତାହାଙ୍କୁ ପ୍ରେତପୁରକୁ ପଠାଇଦେବାକୁ ପ୍ରସ୍ତୁତ ମଧ୍ୟ ଥିଲେ । ଏହି ଦୁରାତ୍ମା ଅନ୍ୟ ମତାବଲମ୍ବୀ ହିନ୍ଦୁମାନଙ୍କର ତଥା ସଦାଚାର ପରାୟଣ ମହମ୍ମଦୀୟମାନଙ୍କର ଅନିଷ୍ଟକାରୀ ହୋଇଥିଲା ।

୧୩୦୯ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମଋତୁରେ ଦିନେ ମଧ୍ୟାହ୍ନ ସମୟରେ ହଠାତ୍

ଅଶ୍ୱାରୋହୀ "ପାଲ" ଗ୍ରାମାଭିମୁଖେ ପ୍ରସ୍ଥାନ କରୁଥିଲେ । ତନ୍ମଧ୍ୟରେ ଯେଉଁ ଅଶ୍ୱାରୋହୀବର କନ୍ଦର୍ପକାନ୍ତ ଲାବଣ୍ୟନିଧି ପ୍ରାପ୍ତ ଜଣେ ରାଜପୁତ୍ର ସେନାପତି ଥିଲେ । ସେ ଅନୁଚରମାନଙ୍କୁ ମୃଦୁମଧୁର ବଚନଦ୍ୱାରା ପ୍ରୋତ୍ସାହିତ କରି ଅଶ୍ୱଗଣକୁ ସୂର୍ଯ୍ୟ ତାପରେ ତାପିତ ହୋଇ ପ୍ରସ୍ଥାନ କରୁଥିଲେ । ଏହାଙ୍କ ନାମ ମଦନସିଂହ ପ୍ରାୟ ପଞ୍ଚବିଂଶତି ବର୍ଷ ବୟଃକ୍ରମରେ ମୂର୍ତ୍ତିମନ୍ତ ଯୌବନରୂପୀ ମଦନସିଂହ ସଦା-ପ୍ରଫୁଲ୍ଲ ଦେଖାଯାଉଥିଲେ ଏବଂ ତାହାଙ୍କର ସୁରମ୍ୟ ମନମୋହନ ବଦନ ଓ ସୁବିଶାଳ ବକ୍ଷସ୍ଥଳ ଦର୍ଶକଗଣଙ୍କ ମନୋମୁଗ୍ଧ କରୁଥିଲା । ଶ୍ୱେତାଶ୍ୱ ପୃଷ୍ଠ-ଦେଶରେ ପାରସ୍ୟ ଦେଶୀୟ ଗଦି ବନ୍ଧାଥିଲା । ଶୁଭ୍ରଶୁଭ୍ର ସେରୁଆ (ପାଇଜାମା) ପରିଧାନ କରି ସୁବର୍ଣ୍ଣ କିରଣରେ ଦେଦୀପ୍ୟମାନ କଶାଇ ଜରି ପଗଡ଼ି ଶିରରେ ଧାରଣ କରି, ଝଟ୍ ଝଟ୍ ଚକଚକାନ୍ ମଖମଲ୍ ଅଙ୍ଗରଖା କଟାରୀ କଟିଦେଶରେ କାଶ୍ମୀର ଦେଶୀୟ ସ୍ୱର୍ଣ୍ଣମଣ୍ଡିତ କଟିବନ୍ଧ (ବେଲ୍ଟ) ବନ୍ଧ, ଅଶ୍ୱକୁ ବାରମ୍ବାର କଶାଘାତ କରି ସେ ପ୍ରସ୍ଥାନ କରୁଥିଲେ । ସଙ୍ଗୀୟ କୁଳଶିରୋମଣି, ବିଜ୍ଞ ଶାନ୍ତଶୀଳ ଓ ସଚ୍ଚରିତ୍ର ସ୍ୱର୍ଗୀୟ ସରଦାର ରାମସିଂହଙ୍କ ପୁତ୍ର ମଦନ ସିଂହ ବାଲ୍ୟକାଳ ଶୈଶବରୁ ସ୍ୱାମୀ କାର୍ଯ୍ୟାଳୟରେ ଅଶ୍ୱାରୋହୀସ୍ଥଳ ଚକ୍ରବର୍ତ୍ତୀଙ୍କ ଅନ୍ତଃପୁରେ ଯାଇ, ସ୍ୱାମୀ କାର୍ଯ୍ୟ ସୁସମ୍ପନ୍ନ ସମାପ୍ତ କରି, ଚକ୍ରବର୍ତ୍ତୀଙ୍କ ପ୍ରିୟପାତ୍ର ହୋଇ ଚିତୋର ଦେଶକୁ ଫେରି ଯାଉଥିଲେ । 'ପାଲ'ଗ୍ରାମ ପର୍ଯ୍ୟନ୍ତ ତାହାଙ୍କୁ ସାହାଯ୍ୟ କରିବା-ପାଇଁ ଚକ୍ରବର୍ତ୍ତୀ ଜାଫରଜଙ୍ଗଙ୍କୁ ସାଙ୍ଗରେ ପଠାଇଥିଲେ । ଜାଫରଜଙ୍ଗ ହିନ୍ଦୁସ୍ଥାନ ନିବାସୀ ପ୍ରସିଦ୍ଧ ମହମ୍ମଦୀୟ ବଂଶୋଦ୍ଭବ ଥିଲେ । ସେ ନିଜ ଗୁଣରେ ବଂଶର ମର୍ଯ୍ୟାଦା ରକ୍ଷା କରୁଥିଲେ । ସେ ଚକ୍ରବର୍ତ୍ତୀଙ୍କର ଜଣେ ବିଶ୍ୱସ୍ତ ଭୃତ୍ୟ । ମଦନସିଂହ ଓ ଜାଫରଜଙ୍ଗ ଉଭୟେ ସହୃଦ ସମ୍ବନ୍ଧ ବ୍ୟକ୍ତ ହେବା ଯୋଗୁଁ ଅଜ୍ଞାତସାରରୁ ସେମାନଙ୍କ ମଧ୍ୟରେ ସ୍ନେହ ଉତ୍ପନ୍ନ ହେଲା । ଅଗ୍ରା ପରିତ୍ୟାଗ କରି 'ପାଲ' ଗ୍ରାମାଭିମୁଖେ ପ୍ରସ୍ଥାନ କରୁଥିବା ସମୟରେ ମାର୍ଗ ମଧ୍ୟରେ ଚୋର ଓ ଲୁଣ୍ଠନକାରୀ ଏକଦଳ ତାହାଙ୍କୁ ଆକ୍ରମଣ କଲେ । ଧୈର୍ଯ୍ୟଶୀଳ ମଦନସିଂହ ଜାଫରଜଙ୍ଗଙ୍କ ସାହାଯ୍ୟରେ ଚୋରମାନଙ୍କୁ ଘଉଡ଼ାଇଦେଲେ ଓ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ବଧ କଲେ । ଅତି ତୀକ୍ଷ୍ଣଧାର ସହିତ ଚୋରମାନଙ୍କୁ ପରାଜିତ କଲେ, କିନ୍ତୁ ଗଳଦେଶରେ ବନ୍ଧୁକାଘାତ ପରିମାଣରେ ଆଘାତ ପ୍ରାପ୍ତ ହେଲେ ।

Digitized by srujanika@gmail.com

ଗ୍ରୀଷ୍ମ ଦୋଷ ଓ ବ୍ରଣଜ୍ୱାଳା ସହ୍ୟକରି ନପାରି ସେ ଦୁଇ ଜଣଙ୍କର ମୁମୂର୍ଷୁ ଅବସ୍ଥା ପ୍ରାପ୍ତହେଲେ । ମାତ୍ର ତତ୍‌କ୍ଷଣାତ୍ ଚୈତନ୍ୟ ପ୍ରାପ୍ତହୋଇ ଅତି କଷ୍ଟରେ ପ୍ରୟାଣ କଲେ । ବ୍ରଣଜନିତ ଶୋଣିତରେ ଅଙ୍ଗରଖାଟି ଆର୍ଦ୍ର ହୋଇଥିଲା ଓ ଦେହରେ ଉକ୍ତ ରକ୍ତସ୍ରାବହେତୁ ବିଶେଷ ପୀଡ଼ା ହେଉଥିଲା । ମଦନ ସିଂହଙ୍କ ସହଗାମୀ ସେବକଗଣ ଉପଯୁକ୍ତଶିକ୍ଷିତ ଥିଲେ । ସେ କଷ୍ଟ କହୁନଥିଲେ କିନ୍ତୁ ସେମାନଙ୍କ ନୟନାଶ୍ରୁ ହୃଦୟସ୍ଥ ଗଭୀର ଚିନ୍ତାର ପରିଚୟ ଦେଉଥିଲା । ଚାପେ ପରିଚିତ ନାହିଁଲେ ସୁଖା ସହଗାମୀ ହେମଙ୍କ ଅବସ୍ଥା ସନ୍ଦର୍ଶନକରି ନାଗରଜଙ୍ଗ ଅତୀବ ଚିନ୍ତିତ ହୋଇ ତାହାଙ୍କୁ ସାନ୍ତ୍ୱନା ଦେବାପାଇଁ ଅନେକଯତ୍ନ କରୁଥିଲେ । ଅଶ୍ୱାରୋହ-ମାନେ କେତେ ସମୟ ଜାଃଗଦିରେ ଗମନକଲେ । ନାଗରଜଙ୍ଗ ରାଜକୁମାରଙ୍କୁ ସମ୍ବୋଧନ କରି କହିଲେ "ଅଉ ଘଡ଼ିରେ ମାତ୍ର ଧୈର୍ଯ୍ୟ ଧାରଣକରନ୍ତୁ, ଗ୍ରାମ ସମୀପକୁ ଆସିଲେଣି, ଦେଖ, ଯେଉଁ ବୃକ୍ଷ ଦିଶୁଅଛି ତାହାର ଉତ୍ତରରେ ଥିବା-ଗ୍ରାମଟି "ଧାଇଗ୍ରାମ" । ପରେ ଅଳ୍ପ ନିର୍ମଳ ଜଳ ତାହାଙ୍କୁ ପିଆଇଲେ । ଜଳପାନ ପରେ ରାଜପୁତ୍ର କିଞ୍ଚିତ୍ ଧୈର୍ଯ୍ୟ ଅବଲମ୍ବନ ପୂର୍ବକ ଅଶ୍ୱପୃଷ୍ଠରେ ନିଶ୍ଚଳରେ ବସିଲେ । ନାଗରଜଙ୍ଗ ପୁନର୍ବାର କହିଲେ "ଏହି ଗ୍ରାମରେ ଆମ୍ଭ ବନ୍ଧୁ ଓ ଚକ୍ରବର୍ତ୍ତୀଙ୍କ ପରମମିତ୍ର ରହିମାନ୍ ଖାନ୍ ଅଛନ୍ତି । ସେ ଆମ୍ଭର ସମସ୍ତ ବନ୍ଦୋବସ୍ତ ଓ ଶୁଶ୍ରୂଷା କରିବେ" । ଏହିରୂପେ କେତେଦୂର ଗମନ କରନ୍ତେ ସେହି ଗ୍ରାମଟି ଦୃଷ୍ଟିଗୋଚର ହେଲା । ଅଶ୍ୱାରୋହୀମାନେ ଗ୍ରାମ ନିକଟବର୍ତ୍ତୀ ହେବାକ୍ଷଣି ରହିମାନ୍ ଖାଁଙ୍କ ସେବକମାନେ ଗଡ଼ ପ୍ରାକାର ଉପରୁ ସେମାନଙ୍କୁ ଦେଖି ରହିମାନଙ୍କୁ ଉକ୍ତ ସମ୍ବାଦ ଜଣାନ୍ତେ ସେ ବେଶଭୂଷାଦି ପରିଧାନକରି ସଗୌରବରେ ତାହାଙ୍କୁ ପାଛୋଟି ଯାଇ ମଦନ ସିଂହଙ୍କ ଦୁରବସ୍ଥା ଦେଖି ଚକ୍ର-ଧ୍ୱଜଙ୍କୁ ଡକାଇ ପଠାଇଲେ । ମାତ୍ର ସେ ଅନୁପସ୍ଥିତ ଥିବାରଜାଣି ବିଶେଷ ଦୁଃଖିତ ହେଲେ ଓ ନାଗରଜଙ୍ଗଙ୍କୁ କହିଲେ "ଭାଇ, ଚକ୍ରଧ୍ୱଜ ନାହିଁବୋଲି ଆମ୍ଭର ଚିନ୍ତିତହେବା ଉଚିତନୁହେଁ । ସେ ମଠରେ ଜଣେ ବୃଦ୍ଧ ସନ୍ନ୍ୟାସୀଅଛନ୍ତି । ସେ ଅନ୍ଧହେଲେ ହେବା ଅତି କୌଶଳରେ ବ୍ରଣ ଚିକିତ୍ସା କରିପାରନ୍ତି । ଏହାଙ୍କୁ ସେହିଠାକୁ ନେଇଯାଅ"— ଏହି ରୂପେ କହି ମଠ ଦେଖାଇବାପାଇଁ ଜଣେ ସେବକଙ୍କୁ ପଠାଇଲେ । ମଦନ ସିଂହଙ୍କୁ ଧୀରେ ଧୀରେ ସେହି ମଠକୁ ନେବା-

Digitized by srujanika@gmail.com

ବେଳକୁ ରାତ୍ର ଏକପ୍ରହର ହୋଇଥିଲା-ବାବାଜି ସାୟଂ କୃତ୍ୟାଦି ଶେଷକରି, ଲୋକମାନେ ନିଦ୍ରା ଯିବାକୁ ଉଦ୍ୟତ । ଖାନ୍ ସାହେବଙ୍କ ପ୍ରେରିତ ସେବକ ଦ୍ୱାର-ଦେଶରେ ପହଞ୍ଚିମାତ୍ର ହୋଇ "ବାବାଜି ମହାରାଜ୍" ବୋଲି ଡାକିଲେ । ବାବାଜି ତାହାର କଣ୍ଠଧ୍ୱନିରୁ ବ୍ରଣ ପ୍ରପୀଡ଼ିତ କୌଣସି ରୋଗୀକି ତାହାଙ୍କ ନିକଟକୁ ଆଣିଥିବାର ଅନୁମାନକରି ପାଖରେ ଶୋଇଥିବା ନାତୁଣୀର ଦେହରେ ହାତଦେଇ, କହିଲେ "ହେମଲତା ! ହେମଲତା ! କବାଟ ଫିଟାଅ" । ଶାନ୍ତଶୀଳା ଓ ନବଜାତ ହୃଦୟା ହେମଲତା ପିତାମହଙ୍କ ଡାକ ଶ୍ରବଣ କରିବାମାତ୍ରେ ନିଦ୍ରା-ଯୋଗକଳ୍ପ ଚକ୍ଷୁ ଉନ୍ମୀଳନ କରୁଁ କରୁଁ କେଶପାଶ ଫିଟି ଆପାଦ ବ୍ୟାପୀ ପୃଷ୍ଠ-ଦେଶ ଅଳଂକୃତ କଲା । ଧୀରେ ଧୀରେ କବାଟ ନିକଟବର୍ତ୍ତୀନୀହୋଇ ତାହା ଉଦ୍ଘାଟନ କରନ୍ତେ ଦ୍ୱାର ଦେଶରେ ଉପସ୍ଥିତ ରାଜପରିଚାରକଙ୍କ ହସ୍ତସ୍ଥ ଆଲୁଅରେ ହେମଲତାର ମୁଖାବଦନ ପୂର୍ଣ୍ଣ ଶରଚ୍ଚନ୍ଦ୍ର ମଣ୍ଡଳ ସଦୃଶ ପ୍ରକାଶିତ ହେଲା । ଉପସ୍ଥିତ ସମସ୍ତ ଲୋକେ ନିସ୍ତବ୍ଧହୋଇ ମଦନ ସିଂହଙ୍କ ଦୁରବସ୍ଥା ବିସ୍ମରଣକରି ନିର୍ନିମେଷ ନୟନରେ ତାହାଙ୍କୁ ନିରୀକ୍ଷଣ କଲେ । ସେମାନଙ୍କ ଏହି ଆଶ୍ଚର୍ଯ୍ୟ ଭାବ କିଞ୍ଚିତ୍ ହ୍ରାସ ହେବା ସଙ୍ଗେ ସଙ୍ଗେ ହେମ ପିତାମହଙ୍କ ନିକଟକୁ ଗମନ କଲେ । ତତ୍ପରେ ସେବକମାନେ ମୁମୂର୍ଷୁ ଅବସ୍ଥା ପ୍ରାପ୍ତ ରାଜକୁମାରଙ୍କୁ ଦେଖାଇଲେ । ବୃଦ୍ଧ ନିକଟବର୍ତ୍ତୀ ପ୍ରକୋଷ୍ଠରେ ଶଯ୍ୟା ପ୍ରସ୍ତୁତ କରାଇ, ଆନହେବା ମାତ୍ରେ ସ୍ୱର୍ଗଦ୍ୱାର ବ୍ରଣ ପରୀକ୍ଷାକରି କହିଲେ "ଏ ଚୋଟଏ ଗୁରୁତର ଆଘାତ, କିନ୍ତୁ ଶ୍ରୀରାମଙ୍କ କୃପାରୁ ମୋହଦ୍ୱାରା ସାଧ୍ୟହୋଇପାରେ" । ତତ୍ପରେ ଜଣେ ଛଡ଼ା ସମସ୍ତଙ୍କୁ ବହିର୍ଦେଶକୁ ପଠାଇଦେଇ, ପ୍ରାଚୀନ ହେଲେସୁଦ୍ଧା ତତ୍କାଳୀନ୍ ଡାକ୍ତରଙ୍କ ଅପେକ୍ଷା ଅଧିକ କୌଶଳରେ ବ୍ରଣଚିକିତ୍ସା କଲେ । ଏତେ ବାର୍ଦ୍ଧକ୍ୟ ଅବସ୍ଥାରେ ସୁଦ୍ଧା ତାହାଙ୍କ ଅଧ୍ୟବସାୟ ଓ ହସ୍ତ ନୈପୁଣ୍ୟ ସନ୍ଦର୍ଶନକରି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତତ୍କାଳୀନ୍ ଥିବାବେଳେ କେତେ ନିପୁଣ ଥିବେବୋଲି ପ୍ରଶଂସା କଲେ । ତଦୁତ୍ତାରୁ ବୃଦ୍ଧ ନାତୁଣୀକୁ ଚାହିଁ କହିଲେ "ମା ! ରାତ୍ର ଶେଷ ହୋଇଆସୁଅଛି, ନିଦ୍ରାକର" କିନ୍ତୁ କୌଣସି କାରଣରୁ ହେମ ନିଦ୍ରା ନଯାଇ କହିଲେ, "ଦାଦା ! ମୁଁ କିଛିକ୍ଷଣ ଏହି ରୋଗୀଙ୍କ ଶୁଶ୍ରୂଷା କରିବି, ତୁମ୍ଭେ ବୃଦ୍ଧ ବ୍ୟକ୍ତି, ନିଦ୍ରାକର । ମୁଁ ଅନେକ ସମୟ ଶୋଇଲିଣି" । ଏହାକହି ମଦନ

Digitized by srujanika@gmail.com

ସିଂହଙ୍କ ଶଯ୍ୟା ନିକଟରେ ବସି ତାହାଙ୍କ ଶରୀର ଲକ୍ଷଣାଦି ନିରୀକ୍ଷଣ କଲେ । ମଦନ ସିଂହଙ୍କ ଅନୁଚରଙ୍କଠାରୁ ସେ ଜଣେ କୁଳୀନ ରାଜପୁତ୍ର ଥିବାର ବୃଦ୍ଧ ଅବଗତହୋଇ ବ୍ରଣର କାରଣବୁଝି ନିଦ୍ରାକଲେ । ରାଜପୁତ୍ର କେତେକ୍ଷଣ ସୁଖରେ ନିଦ୍ରାଗଲେ । ହେମ ତାହାଙ୍କ ଶଯ୍ୟା ନିକଟରେ ବସି ନିର୍ନିମେଷ ନୟନରେ ତାହାଙ୍କୁ ଦେଖୁଥିଲେ । ହେମଲତାଙ୍କ ଅସାଧାରଣ ରୂପ ଲାବଣ୍ୟ ଦେଖିଲେ ସେ ତାତ୍କାଳୀନ ସ୍ତ୍ରୀମାନଙ୍କ ଶିରୋରତ୍ନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ— ନିରନ୍ତର ପ୍ରଦର୍ଶିତ ସଦ୍‌ଗୁଣଛଡ଼ା ତାହାଙ୍କର ଅନ୍ୟ ପାର୍ଥିବ ଭୂଷଣ କିଛି ନଥିଲା । ଏଡ଼େ ସୌନ୍ଦର୍ଯ୍ୟବତୀ କନ୍ୟା କୌଣସି ସମ୍ଭ୍ରାନ୍ତ ଗୃହରେ ନଥିଲି ଅତି ଗରିବ ଅନ୍ଧର ଘରେ ସାଧାରଣ ସ୍ତ୍ରୀମାନଙ୍କପରି ଯନ୍ତ୍ରଣା ସହିବାକୁ ହେଲାବୋଲି ଅନେକ ସୁହୃଦ୍ ବ୍ୟକ୍ତି ଖେଦ କରୁଥିଲେ । ସରସୀରୁ ଜଳ ଅନୟନ କଲାବେଳେ ତାହାଙ୍କ କୋମଳ ହସ୍ତରେ କଳସ୍ଥିତ ଦଳ ଲାଗି ପୀଡ଼ା ହେବାର ଅନ୍ୟାନ୍ୟ ସ୍ତ୍ରୀମାନେ ଦେଖି, ଅରେ ଦୁଃଖିତହୋଇ, ତାହାଙ୍କ ଦ୍ୱାରା କୌଣସି କାର୍ଯ୍ୟ ନକରାଇ ନିଜେ କରିଦେଉଥିଲେ । ହେମ ପୂର୍ଣ୍ଣ ଯୌବନ ପ୍ରାପ୍ତହେବା ଅବଧି, ଦାଣ୍ଡକୁ ଚାହିଁବା ସଙ୍କାଶେ ଏବଂ ଦୁରାତ୍ମାଙ୍କ ଦୃଷ୍ଟିରେ ନପଡ଼ିବା ଲାଗି, ବୃଦ୍ଧ ବାରମ୍ବାର ସତର୍କ କରୁଥିବା ଯୋଗୁଁ ପୂର୍ବପରି ଘରଗ୍ରନ୍ଥି ପଦ୍ମକୁ ନଯାଇ ସଦା ଗୃହ ଚତୁଃସୀମା ମଧ୍ୟରେ ରହିବାର ଚେଷ୍ଟା କରୁଥିଲେ । ଏବଂ କିଛିନ୍ନାବି ବକ୍ରୀ ନହୋଇ ସର୍ବଦା ବୃଦ୍ଧ ପିତାମହଙ୍କ ଶୁଶ୍ରୂଷା ରେ କାଳାତିପାତ କରୁଥିଲେ । ଅତଏବ ଉନ୍ନିଦ୍ର ହେଲେ ପିତାମହଙ୍କ ସ୍ୱାସ୍ଥ୍ୟଭଙ୍ଗ ହେବା ଆଶଙ୍କାରେ ତାହାଙ୍କୁ ନିଦ୍ରା କରିବାକୁ କହି ନିଜେ ରୋଗୀଙ୍କ ଶଯ୍ୟା ନିକଟରେ ବସିରହିଲେ । ସେତେବେଳେ ରାତ୍ର ପ୍ରାୟ ଦୁଇ ପ୍ରହର ହୋଇଥିଲା । ମଦନସିଂହ ଗାଢ଼ନିଦ୍ରାଭିଭୂତ ଥାଇ ସୁଦ୍ଧା ବେଳବେଳେ "ରେରେ ! ଦୁରାତ୍ମାଗଣ, ଅସ୍ତ୍ର, ତୁମ୍ଭ ପ୍ରାଣ ନନେଇ ଛାଡ଼ିବ ନାହିଁ" ବୋଲି ସ୍ୱପ୍ନରେ ଚିତ୍କାର କଲେ । ଥରେ ଉଠି ତୃଷା ନିବାରଣାର୍ଥେ ଜଳ ପ୍ରାର୍ଥନା କରନ୍ତେ ମାନବୀ-ଅବତାରଧାରିଣୀ ସୌନ୍ଦର୍ଯ୍ୟଦେବୀଙ୍କ ପରି ଜଣେ ସମ୍ମୁଖରେ ଦଣ୍ଡାୟମାନ ହୋଇ ଜଳ ପ୍ରଦାନ କରିବା କାନ୍ତାରତ୍ନକୁ ସନ୍ଦର୍ଶନ କଲେ । ନିଦ୍ରାବେଶ ଯୋଗୁଁ ପୁନରପି ଚକ୍ଷୁ ମୁଦ୍ରିତ ହେଲା । ହେମଲତା ମଦନସିଂହଙ୍କ ବଦନ ମଣ୍ଡଳରେ ମନହାସର

ରୋଗୀ ସନ୍ଦର୍ଶନ କରି ପ୍ରତିଦାନସ୍ୱରୂପ ନିଜେ ମଦନାଗ ପ୍ରକାଶ କରୁଥିଲେ । ତାହାଙ୍କ ଶରୀରରେ ସ୍ୱେଦ ଜାତହେଲେ ନିଜ ଶରୀର ସ୍ୱେଦ ଜର୍ଜରିତ ହେବା ପର୍ଯ୍ୟନ୍ତ ବ୍ୟଜନ ଚାଳନରୁ କ୍ଷାନ୍ତ ହେଉ ନଥିଲେ; ତାହାଙ୍କୁ ଜ୍ୱର ହେବାଅବଧି ପିତାମହଙ୍କୁ ଉଠାଇ ଔଷଧ ଦଅନ୍ତି, ବ୍ରଣରେ ସେ ପୀଡ଼ିତ ଥିବାରୁ ବିଶେଷ ଯତ୍ନ ହୋଇ, ବହୁକ୍ଲେଶ ପୂର୍ବକ ତାହାଙ୍କ ଶୁଶ୍ରୂଷାରେ ନିଜକୁ ନିୟୋଜିତ କରୁଥିଲେ । ମଦନ ସିଂହଙ୍କ ମନୋହରାକାର ଏବଂ ଅସାମାନ୍ୟ ରୂପଲାବଣ୍ୟ ସନ୍ଦର୍ଶନ କରି ହେମଲତାଙ୍କର ଅପୂର୍ବ ମନୋବିକାର ଜାତହେଲା । ଏହି ଅଜ୍ଞେୟ ମନୋବିକାର ଆବିର୍ଭାବର ସଙ୍ଗେ ସଙ୍ଗେ ରାଜକୁମାରଙ୍କ ପ୍ରତି ଏକପ୍ରକାର ଅନନୁଭୂତ ଅନୁରାଗ ଜନ୍ମିଲା । ମନ ସୁଦୃଢ଼ କରି ସେହି କ୍ଷତ୍ରିୟ ଶିରୋମଣିଙ୍କଠାରୁ ମନ ଫେରାଇ ନେବାକୁ କେତେ ଯତ୍ନ କଲେ ସୁଦ୍ଧା ସକଳ ଯତ୍ନ ବିଫଳ ହେଉଥିଲା ! ଅତଏବ ସେହି ଅପରିଚିତ ରାଜକୁମାରଙ୍କ ବିଷୟରେ ସଦା ଚିନ୍ତିତଥାଇ, "ଦୈବ ! ସର୍ବଗୁଣାଳଙ୍କୃତ, ପରମସୁନ୍ଦର, ଏହି ଯୁବକଙ୍କୁ କି ହେତୁ ଏତେ କଷ୍ଟ ଦେଲ ?" ବୋଲି ନାନାମତେ ଦୈବଙ୍କୁ ଅନେକ ବାଣୀ ଶୁଣାଉଥିଲେ ।

ରାତ୍ର ଅଉ ପ୍ରହରେ ମାତ୍ର ଅଛି, ଏହି ସମୟରେ କୁକୁଡ଼ା ଡାକ ଶୁଣି ବୃଦ୍ଧ ଯୋଗୀ ନିଦ୍ରାତ୍ୟାଗ ପୂର୍ବକ ନାତୁଣୀକୁ ଡାକି କହିଲେ, "ମା, ତୁ ସାରାରାତି ଚେଇଁ ରହିଲୁଣି, ଏଣିକି ମୁଁ ରୋଗୀଙ୍କ ତଦାରଖ କରିବି, ତୁ ନିଦ୍ରା କର" । ପରେ ରୋଗୀର ଶଯ୍ୟା ନିକଟକୁ ଯାଇ ତାହାର ନାଡ଼ୀ ଦେଖିଲେ; ଜ୍ୱରର ତୀବ୍ର ପ୍ରକୋପ ଦେଖି ଅନ୍ୟ ଏକ ନୂତନ ଔଷଧ ସେବନ କରାଇ, ଜାନୁବନ୍ଧରେ ଏକାକୀ ବସି ରହିଲେ । ଏମନ୍ତ ସମୟରେ ତାହାଙ୍କୁ ସମ୍ପୃକ୍ତଥିବା ଅପକାରମାନ ସ୍ମରଣ କରି କହିଲେ, 'ଓହୋ, ଅଲ୍ଲାଉଦ୍ଦୀନଙ୍କ କ୍ରୂରତ୍ୱ ମୋହର ଏହି ଦୁର୍ଦ୍ଦଶାର କାରଣ । ଭଗବାନ୍ ଦୁରାତ୍ମାମାନଙ୍କ ସହାୟ ହେବା ଏହି କଳିଯୁଗର ଧର୍ମ କି ? ଚକ୍ରବର୍ତ୍ତୀ ଜଲାଲଉଦ୍ଦୀନ ! ତୁମ୍ଭେ କେଉଁଠାରେ ଅଛ ? ତଦ୍ରୂପ ଧର୍ମଶୀଳ ପିତୃବ୍ୟଙ୍କ ପ୍ରାଣ ନାଶକରି ସିଂହାସନ ପ୍ରାପ୍ତ ହେବା ଅଲାଉଦ୍ଦୀନ ହୃଦୟରେ ବା କେଉଁରୂପେ ଦୟାର ସଞ୍ଚାର ହେବ ? ଦୈବାନୁଗ୍ରହ ଏଣିକି କପର ଅଛି କେଜାଣି' । ଏହିରୂପେ ମନେ ମନେ ଭାବନା କରୁ କରୁ ରୋଗୀ ତୃଷାନିବାରଣାର୍ଥେ ଜଳ ପ୍ରାର୍ଥନା କରନ୍ତେ ଯୋଗୀଙ୍କ ଧ୍ୟାନ ଭଗ୍ନ ହେଲା । ସେ

Digitized by srujanika@gmail.com

ରୋଗୀଙ୍କ କଣ୍ଠିତ ଜଳ ପ୍ରଦାନ କରି ତାହାଙ୍କ ଶରୀର ସ୍ପର୍ଶ କଲେ ଏବଂ କିଛି ଅଳ୍ପ ଉଷ୍ମା ହୋଇଥିବାର ଜାଣି, ତାହାଙ୍କ ଜୀବନ ନାଶପଦ ନୋହିଲ ସ୍ଥିରକରି ସନ୍ତୁଷ୍ଟ ହେଲେ । ବହୁକ୍ଷଣ ପରେ କାଳ ଗତହେଲା । ଉଦୟାଚଳ ଅଳଙ୍କୃତ କରି ସର୍ବଜନ ପ୍ରିୟ ସୂର୍ଯ୍ୟଦେବ ଉଦିତ ହେଲେ । ଅରୁଣକାନ୍ତି ଦିଗନ୍ତ ବିସ୍ତାରିତ ହୋଇ ସକଳ ପଦାର୍ଥକୁ ସ୍ୱର୍ଣ୍ଣ ବର୍ଣ୍ଣରେ ରଞ୍ଜିତ ଏବଂ ଅପୂର୍ବ ଶୋଭା ପ୍ରଦାନ କଲା । ପ୍ରିୟତମ ବନ୍ଧୁଙ୍କ ଅବସ୍ଥା ଜ୍ଞାତହେବା ସକାଶେ ସୂର୍ଯ୍ୟୋଦୟ ପୂର୍ବେ ନାଜରଜଙ୍ଗ୍ ରହ୍ମାନଖାନ୍ ପ୍ରଭୃତିଙ୍କୁ ସଙ୍ଗେ ଘେନି ଆସିଲେ ଓ ନିଜ ଅଧରରୁ ରକ୍ଷାପାଇବାର ଅବଗତ ହୋଇ ବହୁ ସନ୍ତୁଷ୍ଟ ହେଲେ । ରହମାନ୍ ଖାନ୍ ରୋଗୀର ଅବସ୍ଥା ପ୍ରତି ଦୃଷ୍ଟି ନଦେଇ ଭିନ୍ନ କକ୍ଷସ୍ଥ ପ୍ରକୋଷ୍ଠରେ କପାଟ ପଶ୍ଚାତ୍ ଭାଗରେ ଦଣ୍ଡାୟମାନା ହେମଲତାର ଅରୁଣ ପଦପଲ୍ଲବ ଦର୍ଶନ କରି, ବିସ୍ମୟାପନ୍ନ ହୋଇ ସେହି ଦିଗରେ ତତ୍ପରତା ରଖି, ମଦନସିଂହ ଓ ନାଜରଜଙ୍ଗଙ୍କ ସମ୍ଭାଷଣରେ ଯୋଗ ଦେଇ କହିଲେ "ଯାହା କେବଳ ଶୁଣିଥିଲି ଆଜ ତାହା ଦେଖିଲି । ଅହା, ଲୋଡାବେଳକୁ ଜଳ ପାଖରେ ନାହିଁ; ଅଚ୍ଛା, ହେଲେ ହେଉନ୍ତୁ' ଏହିରୂପ ମନରେ ଶାନ୍ତଲଭି, 'ଆଜିଦିନ ମୋହର ବିଶେଷ ଶିରବ୍ୟଥା ହୋଇଅଛି, ଆପଣମାନେ କହିବା କଥା ମତେ କିଛି ଶୁଭୁନାହିଁ' ବୋଲି କହିଲେ । ମଦନସିଂହ ଓ ନାଜରଜଙ୍ଗ ଖାନ୍ ସାହେବଙ୍କ ମୁଖଲକ୍ଷଣ ପରିବର୍ତ୍ତନ ଓ କଥୋପକଥନ ସମୟରେ ଅନ୍ୟମନସ୍କ ହେବାର ଦେଖି ତାହାଁର କାରଣ ବୁଝି ନପାରି ଭିନ୍ନହେଲେ । ତଦୁପରେ ତୌରାଗଡ ସମସ୍ତ ବ୍ୟକ୍ତି ଦୁର୍ଗକୁ ପ୍ରତ୍ୟାବର୍ତ୍ତନ କଲେ ।



## ତୃତୀୟ ଅଧ୍ୟାୟ ।

ମଦନ ସିଂହଙ୍କ ଅସୁଖର ପରଦିନ ରହମାନଖାନ୍ ଅନ୍ତଃପୁରସ୍ଥ ଏକ ପ୍ରକୋଷ୍ଠରେ ଚିନ୍ତାମଗ୍ନହୋଇ ବସିଅଛନ୍ତି । ଏହି ସମୟରେ ଦୁଇଜଣ ସେବକ

Digitized by srujanika@gmail.com

ତାହାଙ୍କ ସମ୍ମୁଖବର୍ତ୍ତୀ ହେଲେ ଏବଂ ଭୟ ଓ ବିନୟରେ ସଲାମ୍ (ପ୍ରଣାମ) କରି ଦଣ୍ଡାୟମାନ ହେଲେ । ସନ୍ଧ୍ୟାସମୟ ହୋଇଥିବାରୁ ଏବଂ ରହିମାଙ୍କ ତନ୍ଦ୍ରାକୂଳ ଥିବାଯୋଗୁଁ ସେମାନଙ୍କୁ ଚିହ୍ନି ନପାରି "ଖବ ସେନାହେ" ବୋଲି କର୍କଶ ସ୍ୱରରେ କହି ପରେ "ଓହୋ ନନ୍ଦ ! ଆଉ ଜଣକ କିଏ ? ଗୁଲମଲୀ ! ତୁମ୍ଭେମାନେ କୁଶଳରେ ଅସିଲତ ? " ସେହି ସେବକ ଦ୍ୱୟ ସଙ୍କୋଚ ସ୍ୱରରେ ଉତ୍ତର ଦେଲେ, "ସ୍ୱାମି, ମହାପ୍ରଭୁଙ୍କ କୃପାରୁ ଏପର୍ଯ୍ୟନ୍ତ ଅମ୍ଭେମାନେ କୁଶଳରେ ଅଛୁଁ ।" ତତ୍ପରେ ଚଳିଥିବା ବୃତ୍ତାନ୍ତ ଜଣାଇବାକୁ ଖାନ୍ ସାହେବଙ୍କ ଅନୁଜ୍ଞା ହେବାରୁ ନନ୍ଦ ନିମ୍ନମତେ ଜଣାଇଲେ । "ମହାପ୍ରଭୋ ! ପ୍ରଥମେ ଭାଲର ବିଷୟ ଜଣାଉଛୁ । ଗତ କାଲି ପୂର୍ବାହ୍ନ ୧୦ଟା ନଗର ଠାରୁ ଦଶଜଣ କେଉଁଠାକୁ ବା ପ୍ରସ୍ଥାନ କରୁଥିଲେ, ସେମାନେ ଅମ୍ଭମାନଙ୍କ ଦୃଷ୍ଟିରେ ପଡିଲେ ! ଭଗବାନ୍ ପଥିକଙ୍କୁ ଧରିବାକୁ ଦେବନାହିଁ ବୋଲି ମହାରାଜ ଯେଉଁ ହୁକୁମ ଦେଇଅଛନ୍ତି ତାହା ଶିରୋଧାର୍ଯ୍ୟ କରି, ସେମାନେ ଧନୀ ପରି ଦୃଶ୍ୟ ହେବାରୁ ଅମ୍ଭେ ୨୫ ଜଣ ସେମାନଙ୍କୁ ଆକ୍ରମଣ କଲୁଁ । ମହାପ୍ରଭୋ ! କି କହିବୁ, ସେମାନଙ୍କ ମଧ୍ୟରୁ ଜଣେ ସୁନ୍ଦର ରାଜପୁତ୍ର ଅମ୍ଭମାନଙ୍କ ମଧ୍ୟରୁ ୧୨ ଜଣଙ୍କୁ ଏକାବେଳକେ ପ୍ରେତପୁରକୁ ପ୍ରେରଣ କଲା, ୭ ଜଣ ଆହତ ହୋଇ ମୁମୂର୍ଷୁ ଅବସ୍ଥାରେ ପଡିଅଛନ୍ତି । ମାତ୍ର ସେହି ରାଜପୁତ୍ର ଭୀଷଣ ଆଘାତପ୍ରାପ୍ତ ହୋଇଅଛନ୍ତି ।" "ଏହିରୂପ କହି ୨ ଅଶ୍ରୁ ବିସର୍ଜନ ପୂର୍ବକ ଶୋକ ଗଦ୍‌ଗଦ ସ୍ୱରରେ ଜଣାଇଲା "ପ୍ରଭୁ ! ଅମ୍ଭର ବାଲକ ମଧ ପରଲୋକପ୍ରାପ୍ତ ହୋଇଅଛନ୍ତି" । ଏହି ବୃତ୍ତାନ୍ତ ଶ୍ରବଣକରି ଖାନସାହେବଙ୍କ ମନରେ କ୍ରୋଧ, ଭୟ, ଓ ବିସ୍ମୟ ଜାତହେଲା ଏବଂ ବହୁକ୍ଷଣ ପର୍ଯ୍ୟନ୍ତ ତାହାଙ୍କର ବାକ୍ୟ ସ୍ଫୁରିଲା ନାହିଁ, କାଷ୍ଠ ପୁତ୍ତଳିକା ପରି ସେ କିଛିକ୍ଷଣ ନିସ୍ତବ୍ଧ ଭାବରେ ତୁନି ରହିଲେ । ପରିଶେଷରେ ଧୈର୍ଯ୍ୟ ଅବଲମ୍ବନ କରି କହିଲେ, "କାହିଲ୍, ଜାହେଲ ! ତୁମ୍ଭେ ବଦମାସମାନେ କୌଣସି କାର୍ଯ୍ୟ ସୁଚାରୁରୂପେ କରିପାରନାହିଁ । ସେମାନେ ଚକ୍ରବର୍ତ୍ତୀଙ୍କ ଠାରୁ ସମ୍ବାଦ ଆଣିବା ରାଜପୁତ ପ୍ରମୁଖା ବ୍ୟକ୍ତିମାନେ, ବର୍ତ୍ତମାନ ଏହି ଗ୍ରାମରେ ଅଛନ୍ତି । ସେମାନଙ୍କ ସମଭିବ୍ୟାହାରରେ ଅମ୍ଭ ବ୍ୟାତରଞ୍ଜଙ୍କ ମଧ ଆସିଅଛନ୍ତି । ମୋହର ବିଷୟ ସେ ଜାଣନ୍ତି । ଚକ୍ରବର୍ତ୍ତୀଙ୍କୁ ଏହିକଥା ଜଣାଇବ ଉଚିତ ହେବନାହିଁ । ଓହୋ ! ଜମୀରୁଲ୍, ଓଃ ମହମ୍ମଦ୍, ଏହି

Digitized by srujanika@gmail.com

ଆପଣଙ୍କୁ ଉଦ୍ଧାର ଦେଲେ ଏକଶତ ଫକୀରଙ୍କୁ ଅନ୍ନଦାନ କରିବ" । ଏହିପରି ନାନାପ୍ରକାରରେ ଧୈର୍ଯ୍ୟ ତ୍ୟାଗକରି, ଅତିବ ଭୀରୁ ହୋଇଥିବା ହେତୁ ଦେବତାମାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ତହିଁରେ ଗୁଲ୍‌ମଅଲି ଭୟରେ ଥରହର ହୋଇ କହିଲେ "ମହାପ୍ରଭୋ ! ଅମ୍ଭେମାନେ ନଜାଣି ଗାଳିରେ ପଡ଼ିଲୁଁ । ଅମ୍ଭେମାନେ ତୁମ୍ଭର ଦାସାନୁଦାସ, ଅମ୍ଭଙ୍କୁ ଉଦ୍ଧାରକର" । କିଛିକ୍ଷଣ ପରେ ଖାନ୍ ଧୈର୍ଯ୍ୟଧାରଣ କରି ଚାଲିବା ବୃତ୍ତାନ୍ତ ଆମୂଳ ଜଣାଇବାକୁ ଆଜ୍ଞାଦେଲେ । ନନ୍ଦ ଅଉବକ୍ଷ ନଙ୍କରୁ ମୁଣାରେଥିବା କାଗଜ ଖଣ୍ଡାଏ ବାହାରକରି ଖାନ୍ ହସ୍ତକୁ ବଢ଼ାଇଦେଇ କହିଲା "ମହାପ୍ରଭୋ ! ଯମୁନାନଦୀ ତୀରସ୍ଥ ଦେବାଳୟ ନିକଟରେ ଜଣେ ଯୋଗୀଙ୍କଠାରୁ ଏହା ଅମ୍ଭଙ୍କୁ ଲବ୍ଧହେଲା । ତାହାର ପ୍ରାଣ ନାଶକରି ଏହା ପାଇଅଛୁଁ" । ଖାନ୍‌ସାହେବ ସେହି କାଗଜଖଣ୍ଡକ ଉତ୍ତମରୂପେ ପରୀକ୍ଷା କରନ୍ତେ ତନ୍ମଧ୍ୟରେ ଅତ୍ୟନ୍ତ ରହସ୍ୟ ବିଷୟକ ଖଣ୍ଡିଏ କାଗଜ ପାଇଲେ ଏବଂ ତଦ୍ଦ୍ୱାରା ଚିନ୍ତାଗ୍ରସ୍ତ ଖାନସାହେବଙ୍କ ମୁଖାରବିନ୍ଦ ମନ୍ଦହାସ ପରିପୂର୍ଣ୍ଣ ହେଲା । ଉପଯୁକ୍ତ ଅବସ୍ଥା ଦଲିଲ ଅର୍ପଣକାରୀ ଚକ୍ରବର୍ତ୍ତୀଙ୍କ ଦଣ୍ଡସମ୍ପାଦନ କରି-ପାରିବେ ବୋଲି ଆନନ୍ଦିତହୋଇ ପୂର୍ବୋକ୍ତ ଚତୁର୍ଜଣଙ୍କୁ ଗୁଲ୍‌ମଲି ଭୋଜନ-କୁ ଯିବାକୁ ବିଦାୟଦେଲେ । ଏବଂ ନନ୍ଦକୁ ନିର୍ଜ୍ଜନ କକ୍ଷକୁ ନେଇଯାଇ ତାହାର କାନରେ କହିଲେ "ନନ୍ଦ ! ତୁ ମୋର ଅତ୍ୟନ୍ତ ବିଶ୍ୱସ୍ତ ଭୃତ୍ୟ; ତୋହଦ୍ୱାରା ମୋହର ଗୋଟିଏ ଗୋପନୀୟ କାର୍ଯ୍ୟ କରାଇବାକୁ ନିଶ୍ଚୟ କରିଅଛି । ସେହି କାର୍ଯ୍ୟ ସାଧନ କଲେ ପ୍ରଚୁର ସ୍ୱର୍ଣ୍ଣମୋହର ପୁରସ୍କାର ଦ୍ୱାରା ତୁ ଭାଗ୍ୟବାନ ହେବୁ । ଏହି ଗ୍ରାମନିବାସୀ ଅନ୍ଧ ଯୋଗୀଙ୍କ ଘରେଥିବା ଯୁବତୀଙ୍କୁ ଯତ୍ନଭଜନେ ବା ଅନ୍ୟ କୌଣସି ଉପାୟରେ ମୋହର କରଗତ କରିବାକୁ ହେବ । ତାହାର ପାଣିଗ୍ରହଣ ନକଲେ ମୋହର ପ୍ରାଣରକ୍ଷାର ଆଶା ନାହିଁ । ତୋହପାଇଁ ମୁଁ ବାଟଚାହିଁ ବସିଥି-ଲି ।" ଏହା ଶ୍ରବଣ କରିବା ମାତ୍ରେ ନନ୍ଦର ଶରୀର ରୋମାଞ୍ଚିତ ହେଲା, ସେ କହିଲା, "ସ୍ୱାମି, ସେହି ସ୍ତ୍ରୀ ସଦ୍‌ଗୁଣବତୀ । ବୃଦ୍ଧ ଯୋଗୀ ମଧ୍ୟ ଅତ୍ୟନ୍ତ ଉତ୍ତମ ପୁରୁଷ । ଜନସାଧାରଣ ତାହାଙ୍କୁ ବିଶେଷ ଭକ୍ତି କରନ୍ତି । ଏପରିସ୍ଥଳେ ଆପଣଙ୍କ ବାଞ୍ଛା ସିଦ୍ଧି କରିବା ସାଧ୍ୟ ନୁହେଁ"-ନନ୍ଦ ଏହିରୂପ ଆପଣାର ଅସାମର୍ଥ୍ୟତା ଜଣା-ଇବା ମାତ୍ରେ, ଖାନ୍ କ୍ରୋଧୋଦ୍ଦୀପିତ ହୋଇ, ପାର୍ଶ୍ୱସ୍ଥ ଖଡ୍ଗରେ ହାତପକାଇ

Digitized by srujanika@gmail.com

"ବିଶ୍ୱାସଘାତକ ମୋହର ଅନ୍ନଖାଇ ମୋହର କାର୍ଯ୍ୟ କରିପାରିବୁ ନାହିଁ ? ସାବଧାନ ଏହା ନକଲେ ତୋହର ପ୍ରାଣ ରହିବ ନାହିଁ ।" ଏହିରୂପ ଭୟ ଦେଖାଇବାରୁ ଦୁଷ୍ଟମତି ନନ୍ଦ ମ୍ଲେଚ୍ଛର ପାଦତଳେ ପଡ଼ି "ଦେବ, ଅନାଦର କର ନାହିଁ; ମୋହ ପ୍ରାଣଥିବା ଯାବତରି ଏହି କାର୍ଯ୍ୟ ଅବଶ୍ୟ ସାଧନ କରିବ । ଗୋବର୍ଦ୍ଧନ ଦାସଙ୍କ ଦାସୀ ସର୍ବଦ୍ୱାରା ଇହା ପ୍ରତିପାଦିତ ହେବ । ଏକମାସ ଭିତରେ ବନ୍ଦୋବସ୍ତ କରିବି ।" ଏହି ବାକ୍ୟଦାନ କରନ୍ତେ ଖାନ ନନ୍ଦକୁ ଛାଡ଼ିଦେଲେ । ମୃତ୍ୟୁମୁଖରୁ ମୁକ୍ତହେଲାପରି ସନ୍ତୁଷ୍ଟହୋଇ ସ୍ୱାମୀଙ୍କ କାର୍ଯ୍ୟ କିରୂପରେ ସମାଧାନ ହେବ ତାହାର ଉପାୟ ଉଦ୍ଭାବନରେ ରତହେଲା । ଏଣେ ମଦନସିଂହଙ୍କ କ୍ଷତପୀଡ଼ା ଉପଶମ ହେଲେ ହେମଲତା ଇଷ୍ଟଦେବତାଙ୍କୁ ନାନାବିଧ ପୂଜା ସେବା କରି ତାଙ୍କର ମନସ୍କର ବିଶେଷ ସନ୍ତୋଷଣ କରୁଥିଲେ । ଏବଂ ନାଗରଙ୍କ ବନ୍ଧୁ କ୍ରମଶଃ ପୀଡ଼ା ମୁକ୍ତହେବାର ଦେଖି ଅମିତାନନ୍ଦ ପ୍ରାପ୍ତହୋଇ ଭଗବାନଙ୍କୁ ପ୍ରଣାମ କଲେ । ମଦନସିଂହ ଦିନକୁଦିନ ଆରୋଗ୍ୟଲାଭ କଲେ । ଅସ୍ତ୍ରକ୍ଷତ ଜନିତ ଦୌର୍ବଲ୍ୟ ଭିନ୍ନ ଅନ୍ୟ ରୋଗ କିଛି ନଥିଲା । ବୃଦ୍ଧଙ୍କ ଚିକିତ୍ସାରେ ଶାରୀରିକ ବଳସୁଦ୍ଧା କ୍ରମଶଃ ବୃଦ୍ଧି ହେଲା । ସମ୍ପୂର୍ଣ୍ଣ ଆରୋଗ୍ୟଲାଭ କରିବା ପର୍ଯ୍ୟନ୍ତ ନାଗରଙ୍କ ସେସ୍ଥାନରୁ ଯିବା ନିଷେଧପୂର୍ବକ ଖାନସାହେବଙ୍କ ଘରେ ବାସକରି ରହିଲେ । ସେହିଠାରେ ଅବସ୍ଥାନ କରିବା ହେତୁ ପ୍ରଦ୍ୟୁମ୍ନ ଖାନସାହେବଙ୍କ ଦୁର୍ବୁଦ୍ଧି ଓ ଚପଳତାର ଯଥେଷ୍ଟ ଆଭାସ ପାଇପାରିଲେ । ସିଂହ ସଦ୍‌ଗୁଣସମ୍ପନ୍ନ ହେବାଯୋଗୁଁ ଭିନ୍ନ ମତାବଲମ୍ବୀ ହେଲେ ସୁଦ୍ଧା ତାହାଙ୍କ ପ୍ରତି ପ୍ରଗାଢ଼ ଅନୁରାଗ ଏବଂ ସ୍ୱମତାବଲମ୍ବୀ ନିକଟ ବନ୍ଧୁ ହେଲେ ଅସଦ୍‌ବ୍ୟବହାରୀ ଖାନଙ୍କ ପ୍ରତି ଅଶ୍ରଦ୍ଧା ନାଗରଙ୍କଙ୍କ ମନରେ ଉଦ୍ରେକ ହେବାକୁ ଲାଗିଲା । ହେମଲତାଙ୍କ ବିବିଧୋପଚାରରେ ସ୍ୱାସ୍ଥ୍ୟଲାଭ କରି ଏବଂ ତାହାଙ୍କ ରୂପଲାବଣ୍ୟ ଓ ସଦ୍‌ଗୁଣ ସମ୍ପତ୍ତିରେ ମୁଗ୍ଧହୋଇ ମଦନସିଂହଙ୍କ ମନରେ ତାହାଙ୍କ ପ୍ରତି ଅକଥନୀୟ ଅନୁରାଗ ଜାତହେଲା । ବୃଦ୍ଧ ପିତାମହଙ୍କଠାରୁ ଶିକ୍ଷା କରିଥିବା ଭକ୍ତିରସ ପୂର୍ଣ୍ଣ ଓ ନୀତିପ୍ରଦାୟକ ହରି କୀର୍ତ୍ତନ ସୁମଧୁର ସ୍ୱରରେ ଗାଇକରି ପ୍ରେମ ଚିନ୍ତାଭିଭୂତ ମଦନସିଂହଙ୍କ ମନ ଆକର୍ଷଣ କରୁଥିଲେ । କେବେ କେବେ ସ୍ୱହସ୍ତ-

Digitized by srujanika@gmail.com

ପାଳିତ ଶୁକକୁ ଶିଖାଇବା "ସମସ୍ତନ" ଶବ୍ଦ ଶ୍ରୋତାଙ୍କ କର୍ଣ୍ଣବିବରାଭ୍ୟ ହୋଇଥିଲା—ଏହି ଯୁବକ ଅବସ୍ଥାନୁଯାୟୀ ବିଦ୍ୟାଶିକ୍ଷା କରିଥିବାରୁ ଲୋକେ ନଥିବା ସମୟରେ ପିତାମହଙ୍କୁ ନିଜ ବିଦ୍ୟା ପରୀକ୍ଷା ଦେବା ଛଳରେ ମୃଦୁ ମଧୁର ସ୍ୱରରେ ସ୍ତୁତିବାଦ ପାଠ କରି ସିଂହଙ୍କ ହୃଦୟାନନ୍ଦ ସମ୍ବର୍ଦ୍ଧନ କରୁଥିଲେ । ସୂର୍ଯ୍ୟାସ୍ତ ସମୟରେ ବୃଦ୍ଧ ପିତାମହ ଅନେକଙ୍କର ଗଳ୍ପମାନ, ମ୍ଲେଚ୍ଛଙ୍କ ରାଜ୍ୟଶାସନ ସମୟ ଓ ତାଙ୍କ ବାଲ୍ୟକାଳ ଯୁଦ୍ଧ ସମାଚାର ଅତି ଚମତ୍କାରରେ ବର୍ଣ୍ଣନ କରି ଶୁଣାଉଥିଲେ । ସେହି ଗ୍ରାମସ୍ଥ ସମସ୍ତେ ରହମାନ ଖାନ୍‌ଙ୍କ ସ୍ତୁତିବାଦ ଉପହାରରେ ଗଣାଇ ତାହାଙ୍କୁ ଆହ୍ଲାଦିତ କରୁଥିଲେ । ଅତଏବ ନିଜକୁ ଆନନ୍ଦ ମଗ୍ନ ହୋଇ ସିଂହ ଅତିଶୀଘ୍ର ଆରୋଗ୍ୟ ଲାଭ କଲେ । ସିଂହ ସଦ୍‌ଗୁଣବନ୍ତ ଓ ସମ୍ଭ୍ରାନ୍ତ ବଂଶୋଦ୍ଭବ ଥିବାର ଜାଣି ବୃଦ୍ଧଯୋଗୀ ନିଜର ହୀନ ଦଶାର ବିଷୟ ତାହାଙ୍କୁ ଜଣାଇବାକୁ ଇଚ୍ଛା କରି ଥରେ ଦୁଇଥର କିଛି ଅଭିଳାଷ ପ୍ରକାଶ କଲେ । ସିଂହ ପୁଣି ତାହା ଶୁଣିବାକୁ ଉତ୍ସାହ ପ୍ରକାଶ କଲେ କିନ୍ତୁ କୌଣସି କାରଣରୁ ଯୋଗୀ ଜଣାଇ ନ ଥିଲେ । ଚନ୍ଦୋର ଦେଶ ଛାଡି ଆସି କେତୁଦିନ ହୋଇଥିବାଯୋଗୁଁ ଭୀମ ସିଂହ ମହାରାଜା ତାହାଙ୍କପାଇଁ ଅପେକ୍ଷା କରି ବସିଥିବେ ବୋଲି ସିଂହ ପ୍ରୟାଣୋନ୍ମୁଖ ଥିଲେ କିନ୍ତୁ ବୃଦ୍ଧ ଯୋଗୀ ବହୁତ କଳାଇ କହିବାରୁ ଅଉ ଏକ ସପ୍ତାହ ସେଠାରେ ରହିବାକୁ ସ୍ୱୀକାର କଲେ । ଦିନେ ଖାନ ସାହେବଙ୍କୁ ଦର୍ଶନ କରିବାକୁ ଯାଇ ତାହାଙ୍କ ନଗର ଓ କଟେଣି ପ୍ରଭୃତି ଏବଂ ଗଡବାପୀ ସନ୍ଦର୍ଶନ କରି ପ୍ରଶଂସା କରି ମଦନ ସିଂହ କଥା ପ୍ରସଙ୍ଗରେ ଖାନ୍‌ସାହେବଙ୍କୁ ନମ୍ର ମନେ କହିବାକୁ ଲାଗିଲେ:—

ମଦନ ସିଂହ—ମିତ୍ର ! ଆପଣ ବିରକ୍ତ ନ ହେଲେ ମୁଁ ଏ ସଦୁପଦେଶ ଦେବାକୁ ଇଚ୍ଛା କରେ ।

ରହମାନ୍‌—ଭଲ ଶୁଣିବାକୁ କଷ୍ଟ କାହିଁକି ?

ମ—"ଏହି ସ୍ଥାନରେ ଆପଣ ଉତ୍ତମ କୀର୍ତ୍ତି ଅର୍ଜିପାରି ନାହାନ୍ତି । ଆପଣ ପ୍ରଜାଙ୍କୁ ଅପମାନ କରନ୍ତି ବୋଲି ଓ ସେମାନଙ୍କୁ ପୀଡା ଦିଅନ୍ତି ବୋଲି ମୁଁ ଜନସାଧାରଣଙ୍କଠାରୁ ଶ୍ରବଣ କରି ବିଶେଷ ଦୁଃଖିତ ହୋଇଅଛି । ଶୌର୍ଯ୍ୟାଦି କ୍ଷତ୍ରଧର୍ମସବୁ ଆପଣଙ୍କ ବ୍ୟଭିଚାରରେ ନୁଏ ବୋଲି ପ୍ରଜାବର୍ଗଙ୍କ ଦୁରଭିପ୍ରାୟ ଜନ୍ମି-

Digitized by srujanika@gmail.com

ଅଛୁ । ସମ୍ପ୍ରତି ବର୍ଜ୍ଜା ଦାସ ଉକ୍ତ ହୃତପ୍ରାପ୍ତ ହୁଏ ବସୁଧରା ଆପଣଙ୍କ କର୍ତ୍ତବ୍ୟ । ଏବଂ ଆପଣଙ୍କ ପାର୍ଶ୍ୱଚର ଓ ସେବକମାନଙ୍କୁ ଶୀଘ୍ର ଅନ୍ତର କରିବା ଅବଶ୍ୟକ ।" ଇତ୍ୟାଦି କୁମନ୍ତ୍ରୋପଦେଶ ଶୁଣି ଖାନ ସଙ୍କୁଳ ଚୂଡ଼ାମଣିଙ୍କ ପ୍ରତି ଅତ୍ୟନ୍ତ ରାଗସର୍ବସ୍ୱ ଉଠି ସ୍ୱହସ୍ତସ୍ଥିତ ଖଡ୍ଗ ଦ୍ୱାରା ତାହାଙ୍କୁ ଆଘାତ କରିବାକୁ ଯତ୍ନ କଲେ କିନ୍ତୁ ଜାହଲଚାନ୍ଦ ତାହାକୁ ଧରି ପଶ୍ଚାତ ସେହି ଦୌରାତ୍ମ୍ୟ ନିବାରଣ କଲେ । ମଦନ ସିଂହ ତତ୍କ୍ଷଣାତ୍ ଲଜ୍ଜିତ ହୋଇ ସଂଶୟ ବନ୍ଧୁମାନଙ୍କ ସଙ୍ଗରେ ଖାନ୍ ସଭାକୁ ଘୁଞ୍ଚି ଗଲେ । ଅନନ୍ତର ମଦନସିଂହ ସେହି ସ୍ଥାନ ପରିତ୍ୟାଗ କରି ଜାହଲଚାନ୍ଦଙ୍କ ସହିତ ମଠକୁ ପ୍ରତ୍ୟାଗମନ କଲେ । ଇତିପୂର୍ବେ ଉକ୍ତ ଦୁଷ୍ଟ ବିଶ୍ୱାସଘାତ ଚକ୍ରବର୍ତ୍ତୀଙ୍କୁ ଜଣାଇ ଅପକାର କରିବେ ବୋଲି ଅନୁମାନ କରି ସିଂହ ଓ ଜାହଲଚାନ୍ଦ ପ୍ରତି ଖାନସାହେବଙ୍କ ଅଶ୍ରଦ୍ଧା ଜନ୍ମିଥିଲା । "ବୋଦ୍ଧିର ଉପରେ ନଳିତା ଘଡ଼ା" ପରି ଅଦ୍ୟର ଘଟଣା ସେହି ଅଶ୍ରଦ୍ଧା ଦ୍ୱିଗୁଣ ବୃଦ୍ଧି କଲା । ସ୍ୱଜାତିଙ୍କ ଯୋଗୁଁ ସ୍ୱଭାଗ୍ୟ ହେଲେ ସୁଦ୍ଧା ଜାହଲଚାନ୍ଦଙ୍କ ପ୍ରତି ଖାନଙ୍କ ବିଶେଷ ବିଦ୍ୱେଷ ଜନ୍ମିଥିବାରୁ ସେ କୌଣସି ଉପାୟରେ ହେଉ ଚକ୍ରବର୍ତ୍ତୀଙ୍କଠାରେ ତାହାଙ୍କର ମିଥ୍ୟାଦୋଷ ରଟନା କରି ନିଜେ ନିର୍ଦ୍ଦୋଷୀ ବୋଲାଇ ନିରପରାଧୀ ଜାହଲଚାନ୍ଦଙ୍କୁ ବିନାଦୋଷରେ ଦଣ୍ଡ ଦିଆଇବାକୁ ନାନା ସବୁ ଚିନ୍ତା କରୁଥିଲେ । ଏଣେ ଶତ୍ରୁର ମଧ୍ୟରେ ନିବାସ କରିବା ଅପରିଣାମ ବିବେଚନା କରି ସିଂହ ଶୀଘ୍ର ପ୍ରସ୍ଥାନର ଚେଷ୍ଟା କରୁଥିଲେ । ଏହି ଚେଷ୍ଟା ହେମଲତାଙ୍କ ଦୁଃଖର କାରଣ ହୋଇଥିଲା । ଉପରୋକ୍ତ ଘଟଣାର ପର ଦିନ ପ୍ରାତଃକାଳରେ ସିଂହଙ୍କ ପ୍ରସ୍ଥାନ ସ୍ଥିର ହେଲା । ତତ୍ପୂର୍ବ ଦିବସ ହେମ ଅନ୍ନ ସ୍ପର୍ଶ କରି ନାହାନ୍ତି । ଯାହାହେଉ ରାଜକୁମାରଙ୍କ ପ୍ରସ୍ଥାନ ଅନିବାର୍ଯ୍ୟ ଜାଣି ବୃଦ୍ଧଯୋଗୀ ତାହାଙ୍କୁ ଏକାକୀ ଗୋଟିଏ ପ୍ରକୋଷ୍ଠ ଭିତରକୁ ନେଇ ଯାଇ ଅତ୍ୟନ୍ତ ଗୁପ୍ତରେ ପ୍ରମାଣ କରାଇ ନିଜର ପୂର୍ବାଶ୍ରମ ବିଷୟ ବୃତ୍ତାନ୍ତ କହିବାକୁ ଆରମ୍ଭ କଲେ, "ବାବୁ ! ତୁମ୍ଭେ ମୋହର ପୁତ୍ର ସମାନ; ତୁମ୍ଭଙ୍କୁ ଦେଖିବା ଦିନ ଅବଧି ମୋହର ଆତ୍ମୀୟକୁ ଦେଖିଲା ପରି ମୋତେ ଲାଗୁଅଛି, ମୋହର ପୂର୍ବ ଅବସ୍ଥା ତୁମ୍ଭଙ୍କୁ ଜଣାଇଲେ ତୁମ୍ଭ ଦ୍ୱାରା ଉପକୃତ ହୋଇପାରିବ ବୋଲି ମୋହର ଅନୁମାନ ହେଉଅଛି । ସମସ୍ତେ ଜାଣନ୍ତି ଯେ ମୁଁ ଜଣେ ବାବାଜୀ, କିନ୍ତୁ

Digitized by srujanika@gmail.com

ମୁଁ ତାହା ନୁହେ । ଉତ୍ତମ ସ୍ୱଜନଗଣରେ ମୋହର ଜନ୍ମ ହୋଇଅଛି ଏବଂ ଡମ୍ବର ମୋହର ନିବାସ ସ୍ଥାନ । ବିଶେଷ କାରଣରୁ ମୁଁ ସ୍ୱଦେଶ ତ୍ୟାଗ କରି ଦିଲ୍ଲୀ ଚକ୍ରବର୍ତ୍ତୀଙ୍କଠାରେ ଫୌଜଦାର କାର୍ଯ୍ୟରେ ନିଯୁକ୍ତ ଥିଲି । ମୁଁ ଓ ମୋହର ପୁତ୍ର ଜନାର୍ଦ୍ଦନ ସିଂହ ଖିଲ୍‌ଜି ବଂଶ ସ୍ଥାପକ ଜଲାଲୁଦ୍ଦୀନଙ୍କଠାରେ ସେନାନାୟକ ହୋଇ ତାହାଙ୍କ ଜ୍ୟେଷ୍ଠପୁତ୍ର ବର୍ତ୍ତମାନ ଚକ୍ରବର୍ତ୍ତୀ ଅଲାଉଦ୍ଦିନଙ୍କ ସହିତ ଦକ୍ଷିଣ ହିନ୍ଦୁସ୍ଥାନ ବିଜୟଯାତ୍ରା କଲୁଁ । ମହାରାଷ୍ଟ୍ର ରାଜ୍ୟ ଜିଣିଲା ବେଳେ ମୁଁ ବିଶେଷ ସାହାଯ୍ୟ କରିଥିଲି । ମୋହର ପ୍ରତି ଜଲାଲୁଦ୍ଦୀନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଦକ୍ଷିଣହିନ୍ଦୁସ୍ଥାନରୁ ପ୍ରତ୍ୟାଗମନ ପରେ ପିତୃବ୍ୟଙ୍କୁ ବଧ କରି ନିଜେ ଚକ୍ରବର୍ତ୍ତୀ ହେବାକୁ ଅଲା-ଉଦ୍ଦୀନଙ୍କ ମନରେ ଦୁରୁଦ୍ଦେଶ୍ୟ ଅଙ୍କୁରିତ ହେଲା । ସେ ଅତ୍ୟନ୍ତ ଗୋପନ ପ୍ରକାଶ କରି ଭବିଷ୍ୟତରେ ମୋହ ସହିତ ପରାମର୍ଶ କଲେ । ମୁଁ ସେହି ଦୁଷ୍କାର୍ଯ୍ୟ କରିବାକୁ ଅନିଚ୍ଛୁକ ହୋଇ ତାହାଙ୍କ ମନରେ ନିରୁତ୍ସାହ ଜନ୍ମାଇଲି ଏବଂ ରାଜଭକ୍ତି ପର-ବଶ ହୋଇ ପ୍ରଭୁଙ୍କୁ କହିବି କଥା ମଧ୍ୟ କଲି । ଅଲାଉଦ୍ଦିନ ଅତ୍ୟନ୍ତ କୁପିତ ହୋଇ ସେହି ଦିନ— ଓହୋ ! କହିବାକୁ ବଚନ ସ୍ଫୁରୁ ନାହିଁ —ମୋହର ଦୁଇଗୋଟି ତରୁଣ ପୁତ୍ରଙ୍କୁ ଘାତକ ଦ୍ୱାରା ବନ୍ଦୀ କରି ମତେ ହତ ଅଙ୍ଗ କରି ମୋହର ପ୍ରାଣ ନାଶ କରିବା ସକାଶେ ଜଣେ ସୁବେଦାରକୁ ଆଜ୍ଞା ଦେଲେ । ଏବଂ ମୋହର ଏକମାତ୍ର ପ୍ରିୟପୁତ୍ର ପୁଣି ତାହାଙ୍କ କର୍ତ୍ତୃକ ନିହତ ହେଲା । ମୋହର ବନ୍ଧୁବର୍ଗ ନାନା ମାଧ୍ୟୋପାୟ ଦ୍ୱାରା ମତେ ରକ୍ଷା କରି ପାଲଙ୍କିରେ ଏହି ସ୍ଥାନକୁ ପଠାଇଦେଲେ । ତେବେ ଏହି କନ୍ୟାଟି ସପ୍ତ-ବର୍ଷୀୟା ବାଳିକା ଥିଲା । ଏହି ନିସ୍ତେଜ ଜୀବନ ପ୍ରାଣ ରକ୍ଷା କରିବା ଅପେକ୍ଷା ମରଣ ମୋହପକ୍ଷେ ଶ୍ରେୟସ୍କର । କିନ୍ତୁ ଏହି ନିଃସହାୟ କନ୍ୟାଟିଲାଗି, ଦଗ୍ଧ ବୃକ୍ଷର ପୁଷ୍ପକୁ ଜଗାଇ ସୁଦ୍ଧା ଏ ଜୀର୍ଣ୍ଣ ପ୍ରାଣ ଧାରଣ କରିଅଛି । ଉପରୋକ୍ତ ଘଟଣାର ପରଦିନ ଅଲାଉଦ୍ଦୀନ ନିଜ ପିତୃବ୍ୟଙ୍କୁ ବଧକରି କେତେକଦିନ ପରେ ମହାମହୋତ୍ସବ କରି ନିଜେ ଚକ୍ରବର୍ତ୍ତୀ ହେଲେ । ସେ ଜଣେ ଜ୍ଞାନହୀନ ପାଷଣ୍ଡ । ପାପ ପ୍ରତି ତାହାଙ୍କର ଭୟ ନାହିଁ; କହିବେ ଏକପ୍ରକାର, କରିବେ ଅନ୍ୟପ୍ରକାର । ବାବୁ, ମୋହର ଦୁର୍ଦ୍ଦଶା ଦେଖ । ବୟସ ହେଲା ୭୦ ବର୍ଷ ମରଣ କାଳ ନିକଟବର୍ତ୍ତୀ ହୋଇଅଛି । ଏହି କନ୍ୟାଟି ବର୍ତ୍ତମାନ ଯୌବନ

Digitized by srujanika@gmail.com

ପ୍ରାପ୍ତ । ମୋହର ମୃତ୍ୟୁକାଳେ ବଡ଼ ବଳହୀନରେ ଏହାର ଅପମାନ ହେବ ଏଭଳି ମାତ୍ର ମନରେ ଶଙ୍କା ହେଉଅଛି । ବର୍ତ୍ତମାନ କୌଣସିମତେ ଚିତୋର ରାଜ୍ୟକୁ ଯିବାକୁ ମୋହର ଇଚ୍ଛା ହେଉଅଛି । ଭୀମସିଂହ ମହାରାଜାଙ୍କଠାରେ ମୋହର ଏହି ହୀନଦଶାରବୃତ୍ତାନ୍ତ ଜଣାଇ ମୋ ପ୍ରତି ତାହାଙ୍କର ଅନୁଗ୍ରହ ଜନ୍ମାଇଲେ ତୁମ୍ଭର ଅଶେଷ ମଙ୍ଗଳହେବ । ମୋହର ନାମ ନାରାୟଣ ସିଂହ, "ହାୟ ! ହାୟ, ନାରାୟଣ ସିଂହର କି ଶୋଚନୀୟ ଅବସ୍ଥା ବାବୁ ! ମତେ ବେଉଁଦଗରେ ଦେଲେ ଗଲ ଚାଲି, ମୁଁ ଏହିଠାରେ ଅନାଥହୋଇ ପଡ଼ିଅଛି" ଏହିରୂପ କହୁ କହୁ ସ୍ୱାଭାବିକ ଧୈର୍ଯ୍ୟ ସମ୍ଭାଳି ନପାରି ଚକ୍ଷୁଦ୍ୱୟରୁ ଧାରବହ ଅଶ୍ରୁ ଜଳ ବୁହାଇ କ୍ରନ୍ଦନ ରୋଦନ କରିବାକୁ ଲାଗିଲେ, ବଜ୍ରବତ୍ ହୃଦୟକୁ ସୁଦ୍ଧା ଜରଜର କରି-ପାରିବା ନାରାୟଣ ସିଂହଙ୍କ ଦୀନ ବଚନ ଶ୍ରବଣକରି ମଦନ ସିଂହ କ୍ଷତ୍ରିୟ ସୁଲଭ କାଠିଣ୍ୟ ତ୍ୟାଗକରି କ୍ଷଣେ ନୀରବ ମଗ୍ନହୋଇ କହିଲେ, "ଅହୋ ! ଆଉ ବ୍ୟସ୍ତ ହୁଅନାହିଁ । ଦୈବଦୁର୍ବିପାକରୁ ତୁମ୍ଭର ଏହି ଦୁର୍ଦ୍ଦଶା । ତୁମ୍ଭର ବୃତ୍ତାନ୍ତ ମୁଁ ଉତ୍ତମରୂପେ ଭୀମ ସିଂହଙ୍କଠାରେ ଜଣାଇ ଅବଶ୍ୟ ତାହାଙ୍କ ଅନୁଗ୍ରହ ଜନ୍ମାଇବି । ଏଣିକି ତୁମ୍ଭ କଷ୍ଟର ଉପଶମ ହେଲା ବୋଲି ବିଶ୍ୱାସକର । ତୁମ୍ଭ ଜାତୁଣୀଙ୍କପାଇଁ ସମ୍ଭ୍ରାନ୍ତ ବଂଶୋଦ୍ଭବ ପାତ୍ର ଅନ୍ୱେଷଣ କରି ବିବାହ କରାଇ ଦେବି । ମୋର କଥାରେ ବିଶ୍ୱାସ କର । ଅଳ୍ପଦିନ ମଧ୍ୟରେ ମୁଁ ସମ୍ବାଦ ଦେବି । ତୁମ୍ଭେ ଅବଶ୍ୟ ଆସିବ । କାଲି ପ୍ରାତଃକାଳରେ ମୁଁ ଚିତୋରକୁ ପ୍ରସ୍ଥାନ କରିବି ।" ଏହିରୂପ ଆଶ୍ୱାସନା ଦେଇ ସିଂହ ସେହି ରାତ୍ରି ସୁଖରେ ନିଦ୍ରାଗଲେ । ତହିଁ ଆରଦିନ ରହମାନ ଖାନଙ୍କଠାରୁ ବିଦାୟ ଗ୍ରହଣ କରି ନାଗରକଙ୍କ ଅଚ୍ଛା ନଗରକୁ ପ୍ରସ୍ଥାନକରିବାକୁ ଇଚ୍ଛାକଲେ । ମଦନ ସିଂହ ଉକ୍ତରୂପ ବିଦାୟ ଗ୍ରହଣକରି ଯିବା ସମୟରେ ନାରାୟଣଙ୍କୁ ଗୋପନୀୟ ସ୍ଥାନକୁ ଘେନିଯାଇ ତାହାଙ୍କୁ ଗାଢ଼ା-ଲିଙ୍ଗନ ପୂର୍ବକ କହିଲେ "ମିତ୍ର ଆମ୍ଭେମାନେ ଏକୋଦର ସହୋଦର ଥିଲେ, ବିଜାତୀୟ ହେଲେହେଁ ବା ମନରେ କୌଣସିରୂପ ପ୍ରଭେଦ ନଥିଲା ଓ କେବେ ରହିବ ନାହିଁ । ଆପଣ ଇତିପୂର୍ବେ କରିଥିବା ମହୋପକାର ଛଡ଼ା ଆଉଗୋଟିଏ ଉପକାର କରିବାକୁ ହେବ । ଏହି ବୃଦ୍ଧ ଓ ତାହାଙ୍କ କନ୍ୟା ଏହାବେଳେକେ ନିଃସହାୟ ହୋଇଅଛନ୍ତି । ଏମାନେ ରହମାନ ଖାନଙ୍କୁ ପ୍ରାଣରେ ଡରନ୍ତି

ସେହି ପାଶ୍ଚାତ୍ୟର ଉପରେ ଏମାନଙ୍କର କୌଣସି ଅପକାର ନହେଲାପରି ଥପଣ ବନ୍ଦୋବସ୍ତ କରି ଦିବେ । ଏମାନଙ୍କ ଘର ଏହି ଗ୍ରାମର କାହାକୁ ସମର୍ପଣ କରି ଯାଅନ୍ତୁ ।" "ଅଚ୍ଛା, ଅବଶ୍ୟ ସେହିପରି କରିବ" ବୋଲି କହି ନାଜରଜଙ୍ଗ ସେଦିନ ପ୍ରସ୍ଥାନ କଲେ । ତତ୍ପରେ ମଦନ ସିଂହ ନାଜରଜଙ୍ଗଙ୍କୁ ଅନାଇ "ସଖେ, ପୁନରପି ଆମ୍ଭେ କେବେ ସାକ୍ଷାତ ହେବା ? ଯେବେ ମହାରାଜା ଓ ତୁମ୍ଭ ଚକ୍ରବର୍ତ୍ତୀ ଯଦି ସନ୍ଧି ସ୍ଥାପନ କରନ୍ତି ତେବେ ଆମ୍ଭମାନଙ୍କର ଯାତାୟାତ ହେବ ଓ ଆମ୍ଭେମାନେ ସ୍ନେହର ଫଳ ଅନୁଭବ କରିପାରିବା । ନଚେତ୍ ପ୍ରଳୟ ରଙ୍ଗଭୂମି ଆମ୍ଭମାନଙ୍କ ମିଳନ ସ୍ଥଳୀ ହେବ । ସାଧ୍ୟହେଲେ, ସମୟେ ସମୟେ ତୁମ୍ଭ କୁଶଳ ସମାଚାର ଜଣାଉଥିବ, ମୁଁ ଯାଏ, ସଲାମ," ଏହିରୂପ କହି ନିଜ ସେବକାଦିଙ୍କ ସହିତ ପ୍ରସ୍ଥାନ କଲେ । ଯିବା ସମୟରେ ବାରମ୍ବାର ହେମଲତାଙ୍କୁ ସ୍ମରଣକରି ପଛକୁ ଚାହିଁ ଚାହିଁ ଅତ୍ୟନ୍ତ ସନ୍ତପ୍ତ ହେଉଥିଲେ । ସେହିଦିନ ମଧ୍ୟାହ୍ନ ସମୟରେ ନାଜରଜଙ୍ଗ ତାଙ୍କ ପିତାଙ୍କ ଘର ପରିଚିତ ଅବ୍ଦୁଲ୍ କରିମ୍ ମଉଲବୀ ସାହେବଙ୍କୁ ଡ଼କାଇ ନାରାୟଣ ସିଂହଙ୍କ ପରିବାରଙ୍କର ତାହାଙ୍କଠାରେ ନ୍ୟସ୍ତକରି, ତାଙ୍କୁ ଆପଦ ପଡ଼ିବା ବେଳେ ସାହାଯ୍ୟ କରିବାକୁ ତାହାଙ୍କ ବାକ୍‌ଦାନ ଲଭି ସେହି ସଂଗ ଅସ୍ତ୍ରାଘାତ ଯାଞ୍ଚା କଲେ । ମୌଲବୀ ସେହି ଗ୍ରାମର ସର୍ବଜନ ପ୍ରିୟ ଓ ଭଗବଦ୍ ଭକ୍ତିପୂର୍ଣ ଥିବା ଯୋଗୁଁ ତଦସ୍ଥ ପ୍ରଜାପୁଞ୍ଜ ତାହାଙ୍କୁ ସବିଶେଷ ଗୌରବ କରୁଥିଲେ । ନାରାୟଣସିଂହଙ୍କ ବୈଦ୍ୟବୃତ୍ତି ସକଳ ଜନୋପକାରୀ ହେବା ହେତୁ ପ୍ରଜାବର୍ଗ ତାହାଙ୍କୁ ବିଶେଷ ସ୍ନେହ କରୁଥିଲେ । ଉପରୋକ୍ତ ଘଟଣାଦ୍ୱାରା ମୌଲବୀ ଓ ନାରାୟଣ ସିଂହ ନିର୍ଭୟରେ ନିଜ ନିଜର ମତ ବିଷୟରେ ସମ୍ଭାଷଣ କରି ସୁଖରେ କାଳଯାପନ କରୁଥିଲେ ।



## ଚତୁର୍ଥ ଅଧ୍ୟାୟ ।

ମଦନସିଂହ ପାଲଗ୍ରାମ ତ୍ୟାଗକରି ଯିବାପରେ ହେମଲତା କେତେଦିନ

Digitized by srujanika@gmail.com

ପର୍ଯ୍ୟନ୍ତ ଅନ୍ନ ପାନାଦି ପ୍ରତି ଅନାସ୍ଥା ପ୍ରକାଶ କରି ଚିନ୍ତାଗ୍ରସ୍ତ ହୋଇ ଶୀର୍ଣ୍ଣ ହେବାକୁ ଲାଗିଲେ । ମାତ୍ର କାଳକ୍ରମେ ପୂର୍ବାବସ୍ଥା ପ୍ରାପ୍ତହୋଇ ସୁଖରେ କାଳଯାପନ କଲେ ମୁଦ୍ଧା ରାଜ କୁମାରଙ୍କ ସୌନ୍ଦର୍ଯ୍ୟ ଓ ମୃଦୁମଧୁର ବଚନ ସ୍ମରଣ କରିନପାରି ସର୍ବଦା ତାହାଙ୍କୁ ମନେପକାଉଥିଲେ । ମଦନସିଂହ କେବେ ସମ୍ବାଦ ଦେବେ ଏବଂ ପୁରସ୍ଥ ସତ୍ୟ ଯୋଗକରି କେବେ ସୁଖରେ ତଭୋବ ରାଜ୍ୟରେ ପ୍ରବେଶ କରିବେ, ଏହି ଚିନ୍ତା କରି କରି ସେହି ସ୍ଥାନ ଦେଇ ପ୍ରସ୍ଥାନ କରୁଥିବା ପ୍ରାପ୍ତ ସମସ୍ତ ପଥିକଙ୍କୁ ଶକୁନ ପରି, କନକ ବର୍ଷୀୟର ଗ୍ରାମ ଅନୁଯୋଗୀ ନାରାୟଣସିଂହ କାଳହରଣ କରୁଥିଲେ । ମୌଲବୀ ଓ ନାରାୟଣସିଂହଙ୍କ ସ୍ନେହ କ୍ରମଶଃ ବୃଦ୍ଧି ହେବାରୁ ଚତୁଷ୍ପ ପ୍ରଜାବର୍ଗ ବିଶେଷ ସନ୍ତୋଷ ପ୍ରକାଶ କରୁଥିଲେ । କିନ୍ତୁ ନାରୁଣୀଙ୍କ ପ୍ରତି ଖାନ୍ ସାହେବଙ୍କ କୃତ ଦୌର୍ଜନ୍ୟ ଦର୍ଶନ କରି ବୃଦ୍ଧ ଅତ୍ୟନ୍ତ ଉଦ୍ବ୍ୟାକୁଳ ଥିଲେ । ହେମଲତା ପ୍ରତି ଖାନ୍ ସାହେବଙ୍କ ଅଭିଳାଷ କ୍ରମଶଃ ବୃଦ୍ଧି ହେଲା ଓ ସେହି ରାଜକନ୍ୟାର ଛବି ମ୍ଳେଚ୍ଛପତିର ହୃଦୟ ଦେଶରେ ଲାଗି ରହିଲାରୁ ବଳପୂର୍ବକ ତାହାକୁ ବାନ୍ଧିଆଣି ନିଜ ଅନ୍ତଃପୁରରେ ବନ୍ଦକରି ରଖି ନିଜ ମନୋରଥ ସାଧନ କରିବାକୁ ଉଦ୍ୟତ ଥିଲା । କିନ୍ତୁ ବିଦ୍ରୋହ ଆପଦ ଘଟିବା ଓ ପ୍ରିୟବନ୍ଧୁ ମୌଲବୀଙ୍କ ପରିତ୍ୟକ୍ତ ହେବା ଆଶଙ୍କାରେ ସେହିପରି କରିପାରିଲା ନାହିଁ । ମୌଲବୀ ସାହେବ ସମ୍ପତ୍ତି ସମ୍ପନ୍ନ ନଥିଲେ ମୁଦ୍ଧା ନିଜର ବିଦ୍ୟା ଓ ସଚ୍ଚରିତ୍ରତା ହେତୁ ଜନସାଧାରଣ ତାହାଙ୍କଠାରେ ଭୟ ଓ ଭକ୍ତି ରଖିଥାନ୍ତି । ଅତଏବ ମୌଲବୀ ଓ ବୃଦ୍ଧ ଯୋଗୀଙ୍କ ଉପକାର କରିବା ଲୋକେ ପ୍ରଜା ହିତୈଷୀ ବୋଲି ବିବେଚିତ ହେଉଥିଲେ । ଏଣେ ଜଗ ସ୍ୱାମୀକାର୍ଯ୍ୟରେ ପ୍ରମତ୍ତଚିତ୍ତ ହୋଇ, ପ୍ରଥମେ ସୁଧା ସହିତ ପ୍ରେମକରି ଯେ କୌଣସିମତେ ହେମଲତାକୁ ସ୍ୱାମୀଙ୍କ ବଶୀଭୂତ କରିବାଲାଗି ନିଜର ଛଳ, ବଳ, କୌଶଳ ପ୍ରୟୋଗ କରି ପ୍ରାଣପଣେ ଚେଷ୍ଟା କଲା । ଉଲ୍ଲିଖିତ ସୁଧାର ବୟସ ଅଷ୍ଟାଦଶ । ଏହାର ମାତା ପତିତ୍ୟାଗ କରି, ବଂଶଧରର ବୃତ୍ତି ଦ୍ୱାରା ଜୀବନୋପାୟ ସାଧନ-କରୁଥିଲା । ସୁଧାର ଅଷ୍ଟମ ବର୍ଷ ବୟସରେ ସେ ପ୍ରାଣତ୍ୟାଗ କଲା । ସେହି ଦିନ ଅବଧି ସୁଧା ବ୍ରାହ୍ମଣ ପରମାନନ୍ଦଙ୍କରେ ଦାସୀ କାର୍ଯ୍ୟକରି ବଞ୍ଚୁଥାଏ । ଏବେ ସେ ଗୋବିନ୍ଦ ଶାସ୍ତ୍ରୀ ନାମଧେୟ ଜଣେ ବ୍ରାହ୍ମଣଙ୍କ ଘରେ ନିଯୁକ୍ତ । ଯୁବତୀ ବୟସ

Digitized by srujanika@gmail.com

ପ୍ରାପ୍ତ ହେବା ଉତ୍ତାରୁ ଶାସ୍ତ୍ରୀ ମହାଶୟ ତାହାକୁ ବୋଧ କରାଇଦେବାକୁ ଚେଷ୍ଟା କଲେ । କିନ୍ତୁ ମାତୃବୃତ୍ତି ଅବଲମ୍ବନ କରିବାକୁ ସ୍ୱାଧୀନ ଅଭିଳାଷ ଥିବାରୁ ତାଙ୍କ ଶାସ୍ତ୍ରୀ ମହାଶୟ ନିଜ ଚେଷ୍ଟାରୁ ନିବୃତ୍ତ ହେଲେ । ସୁଧା ଜଣେ ଅତୀବ ସୁନ୍ଦରୀ ସୁରାଙ୍ଗନା । ଅଳ୍ପକାଳ ମଧ୍ୟରେ ଗ୍ରାମସ୍ଥ ଯୁବକଗଣଙ୍କ ଜୀବନସର୍ବସ୍ୱ ଓ ଅତି ସୁଲଭରେ ସମସ୍ତଙ୍କ ପ୍ରାର୍ଥନୀୟ ଅପୂର୍ବ ସ୍ତ୍ରୀରତ୍ନ ହୋଇ ବାହାରିଲା । ସେ ଥରେ ଖାନ୍‌ସାହେବଙ୍କ ଚିତ୍ତାକର୍ଷଣ କରିଥିଲା । ଧନବାନ୍ ଓ ଉଚ୍ଚାଧିକାର ପ୍ରାପ୍ତ ଖାନ୍-ସାହେବଙ୍କ ସ୍ନେହ ଅର୍ଜିବାକୁ ତାହାର ସମ୍ପୂର୍ଣ୍ଣ ଇଚ୍ଛା ଥିଲା । କିନ୍ତୁ ତାହାଙ୍କରେ ନିଜ ପ୍ରାଣରକ୍ଷକ ହିନ୍ଦୁମାନଙ୍କ ଅପ୍ରିୟ ହେବା ଆଶଙ୍କାରେ ପଶ୍ଚାତ୍‌ପଦ ହେଉ-ଥିଲା । ନନ୍ଦ ଜଣେ ଦାସୀପୁତ୍ର ଥିବା ଯୋଗୁଁ ସୁଧା ସହଜ ସୁଲଭରେ ସେ ନିଜର ସ୍ୱାମୀର ମନୋରଥ ତାହାକୁ ଜଣାଇ ଶୀଘ୍ର କାର୍ଯ୍ୟ ସଫଳ କରିବାକୁ ପ୍ରାର୍ଥନା କଲା । ସୁଧା ନନ୍ଦର କଥା ଶୁଣିନପାରି ପ୍ରତିଦିନ ବାବାଜୀଙ୍କ ମଠକୁ ଯାତାୟାତ କରି ହେମଲତାଙ୍କ ସହିତ ନାନାବିଧ ଛଳରେ କଥୋପକଥନ ଓ ତାହାଙ୍କ ପରିଚୟ ସମ୍ପାଦନ କଲା । ପରେ ସେ ହେମଲତାପାଇଁ ନାନାକାର୍ଯ୍ୟ କରିଦେଇ ଓ ବହୁ-ବିନୋଦନକର ଗଳ୍ପମାନ ଶୁଣାଇ ତାହାଙ୍କୁ ନାନାମତେ ତୃପ୍ତ କରାଇଲା । କିନ୍ତୁ ଦୁଃସହବାସବର୍ଗିଣୀ ହେମଲତା ସୁଧା ସହିତ କେବେ ସରଳ ଭାବରେ କଥାବାର୍ତ୍ତା କରୁନଥିଲେ । ମଦନସିଂହ ପାଖ ଗ୍ରାମରେ ଅବସ୍ଥାନ କଲାବେଳେ ସୁଧା ହେମଲତା ନିମିତ୍ତ ଦୁଇଥର ଆସି, ମଦନସିଂହଙ୍କୁ ଦେଖି ମୋହିତହୋଇ ତାହାଙ୍କ ସହିତ ସମ୍ଭାଷଣ କରିବାକୁ ଚେଷ୍ଟା କରନ୍ତେ ଉତ୍ତର ନପାଇ ନିରାଶ ହୋଇ ଫେରିଯାଇଥିଲା । କିନ୍ତୁ ତଜ୍ଜନିତ କ୍ରୋଧରେ ଅତିଶୟ ଲିପ୍ତହୋଇ, ନିଜେ ଦାସୀପୁତ୍ରୀ ଯୋଗୁଁ ତାହା ସହିତ ରାଜପୁତଙ୍କ ମିଳନ ଦୁଃସାଧ୍ୟ ଏହି କଥା ବିବେଚନା ନକରି ଯେ କୌଣସି ଉପାୟରେ ରାଜକୁମାରଙ୍କୁ ନିଜ ଜାଲରେ ଆବଦ୍ଧ କରିବାକୁ ଚେଷ୍ଟା କରୁଥିଲା । ସିଂହଙ୍କଠାରେ ହେମଲତାଙ୍କ ଅନୁରାଗ ଥିବାର ଅନୁମାନ କରି ତାହାଙ୍କ ପ୍ରତି ଈର୍ଷା ପରବଶ ହୋଇ ହେମକୁ ଖାନ୍-ସାହେବଙ୍କ କରଗତ କଲେ ନିଜେ ଦହ୍ଲୀବହତ ହେବାରୁ ଅତି ସହଜରେ ମଦନସିଂହଙ୍କୁ ବଶ କରିପାରିବ ବୋଲି ସ୍ଥିର କଲା । ଅତଏବ "ଏକୋ କ୍ରିୟା ଦ୍ୱ୍ୟର୍ଥକାରୀ" ନୀତି ଅବଲମ୍ବନ କରି ହେମଲତାଙ୍କ ମନ ଭୁଲାଇବାକୁ ଯତ୍ନ

Digitized by srujanika@gmail.com

କଲ । କଥା ପ୍ରସଙ୍ଗରେ ଯେବେ ଯେବେ ଖାନ୍ ସାହେବଙ୍କ ଗୁଣ ଓ ରୂପ ବର୍ଣ୍ଣନା ମଧ୍ୟ କରିବାକୁ ଲାଗିଲ । ଦିନେ ସୁଧା ଖାନ୍‌ସାହେବଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରନ୍ତେ ହେମ ଉତ୍କ୍ରାନ୍ତ ହୋଇ କର୍କଶ କଣ୍ଠରେ ସୁଧାକୁ ଗର୍ଜ୍ଜନା କରି କହିଲେ "ତୁ ଯେବେ ତାହାର କଥା ମୋହର ଆଗରେ କହିବୁ ନାହିଁ" । ସେହିଦିନ ଠାରୁ ଏ ଦୁଷ୍ଟା ଖାନସାହେବଙ୍କୁ ବସ୍ତୁ ନିକଟ ନନ୍ଦକୁ କହିଲା "ଏଣିକି ହେମଲତାଠାରେ ଖାନ ଅଶା ରଖିବା ଅନୁଚିତ; ହେମ ମଦନ ସିଂହଙ୍କୁ ଆତ୍ମ ସମର୍ପଣ କରିଅଛି; ଖାନସାହେବଙ୍କୁ ସୁଖ ପାଏନାହିଁ ।" ନନ୍ଦ ଏହିବିଷୟ ଖାନଙ୍କୁ ଜଣାନ୍ତେ ତାହାଙ୍କ ଦୁଃଖ ଅବର୍ଣ୍ଣନୀୟ ହୋଇ ଉଠିଲା । କାମୋଦ୍ଦୀପିତ ଯୋଗୁଁ ସେ କୌଣସିମତେ ହେମଲତାକୁ କରଗତ କରିବାକୁ ଦୃଢ଼ ସଙ୍କଳ୍ପବଦ୍ଧ ନାରାୟଣ ସିଂହ ଓ ମୌଲବୀ ସାହେବଙ୍କ ମଧ୍ୟରେ ବିଶ୍ୱେଷ ଜନ୍ମାଇବାକୁ ଚେଷ୍ଟା କଲା । କିନ୍ତୁ କୃତକାର୍ଯ୍ୟ ନହେବାରୁ ନନ୍ଦ ପ୍ରଭୃତି ଅନ୍ୟାନ୍ୟ ସେବକଙ୍କ ସହିତ ଇତର ଉପାୟ ଅନୁସନ୍ଧାନ କରିବାକୁ ଲାଗିଲା । ହେମଲତା ପ୍ରତି ଖାନ ସାହେବଙ୍କ ମୋହ ଜନ୍ମିବା ସମ୍ବାଦ ନାରାୟଣ ସିଂହ ମୌଲବୀ ଓ ହେମଲତା ଶ୍ରବଣକରି ଯେଉଁ ସମୟରେ କି ଅପଦ ଘଟିବ ବୋଲି ଅତ୍ୟନ୍ତ ବ୍ୟସ୍ତ୍ରାନ୍ତ ହୋଇଥିଲେ । ବିଦେଶୀ ବେଲେସୁନ୍ଦ୍ରା ଯୋଗୀଙ୍କୁ ରକ୍ଷାକରିବା କର୍ତ୍ତବ୍ୟ ବିବେଚନାକରି ଯେଉଁ ଉପାୟରେ ତାଙ୍କୁ ଅପଦରୁ ରକ୍ଷା କରିବେ ଏହି ବିଷୟରେ ମୌଲବୀ ସର୍ବଦା ଚିନ୍ତିତ ଥିଲେ । ପ୍ରାୟ ଚଉପାଠ ମାସ ହେଲା ମଦନ ସିଂହଙ୍କଠାରୁ କିଛି ସମ୍ବାଦ ନପାଇ ସେ ତାଙ୍କ ବିଷୟ ସମ୍ପୂର୍ଣ୍ଣରୂପେ ବିସ୍ମରଣ କରି ଅଛନ୍ତି ବୋଲି ଭାବି, ନିରାଶହୋଇ ଅନ୍ୟ କୌଣସି ଉପାୟ ବିବେଚନା କରି-ପାରିଲେ ନାହିଁ । ପରିଶେଷରେ ଚଉପାଠ କୋଶ ଦୂରରେ ଥିବା ଅଲଗଡ଼ ନଗରକୁ ପ୍ରସ୍ଥାନ କରିବାକୁ ନିଶ୍ଚୟ କଲେ । ଅତଏବ ମୌଲବୀ ତାହାଙ୍କ ପ୍ରସ୍ଥାନ ବିଷୟ ବନ୍ଦୋବସ୍ତ କରାଇ ସେହି ଗ୍ରାମର ଦୁଇଜଣ ପ୍ରିୟବନ୍ଧୁଙ୍କଠାରୁ ପତ୍ରଲେଖି, ଯଥାସାଧ୍ୟ ଶୀଘ୍ର ପ୍ରସ୍ଥାନ କରିବାକୁ କହି, ତାହାଙ୍କ ସହିତ ଯିବାପାଇଁ ଦୁଇଜଣ ସେବକଙ୍କୁ ନିଯୁକ୍ତ କଲେ । ଇତିମଧ୍ୟରେ ସହସା ହେମଲତାଙ୍କୁ ଜ୍ୱର ହେବାରୁ

Digitized by srujanika@gmail.com

ଯାହା ସ୍ଥିରିତ ରହିଲା । "ନାରାୟଣ ସିଂହଙ୍କ ସହିତ ତୁମ୍ଭେ ଯୁଦ୍ଧ କରିବା ମୋହର ଇଚ୍ଛା ନୁହେଁ । ତୁମ୍ଭେ ତହିଁରୁ କ୍ଷାନ୍ତ ହୁଅ" ବୋଲି ମୌଲବୀଙ୍କ-ଠାରୁ ଗୋପନ ସମ୍ବାଦ ଦେଲା । କିନ୍ତୁ ମୌଲବୀ ସେହି ଆଦେଶ ପ୍ରତି ଭ୍ରୂକ୍ଷେପ ନ କରନ୍ତେ ଗୋପନ କ୍ରୋଧାବିଷ୍ଟ ହୋଇ, ତାହାଙ୍କ ଗର୍ବ ଖର୍ବ କରିବା ପାଇଁ ଦୃଢ଼ସଙ୍କଳ୍ପ ହୋଇ ଉପଯୁକ୍ତ ସମୟ ନିରୀକ୍ଷଣ କରି ବସିଲା । ଇତିମଧ୍ୟରେ ହେମଲତା ଅତିଶୟ ଜ୍ୱର ପ୍ରପୀଡ଼ିତ ହୋଇ କୌଣସି ଚିକିତ୍ସା ଦ୍ୱାରା ଜ୍ୱର ଉପଶମ ନହେବାରୁ ବୃଦ୍ଧ କତିପୟ ବ୍ୟକ୍ତିଙ୍କ ପରାମର୍ଶରେ ସେହି ଗ୍ରାମାଗତ ଜଣେ ବୈରାଗୀଙ୍କୁ ଡକାଇ ନେଇ ନାତୁଣୀର ବୃତ୍ତାନ୍ତ ଜଣାଇଲେ । ଗୋସାଇଁଙ୍କୁ ଦେଖି ହେମ ନମସ୍କାର କରି ସମ୍ମୁଖରେ ଦଣ୍ଡାୟମାନ ହେଲା । ଗୋସାଇଁ ତାହାକୁ ଆଶୀର୍ବାଦ କରି ତାହାର ମୁଖଲକ୍ଷଣାଦି ଅତିସାବଧାନସହକାରେ ନିରୀକ୍ଷଣ କଲେ ଏବଂ ବୃଦ୍ଧଙ୍କ ଶରୀର ଆପାଦମସ୍ତକ ପରୀକ୍ଷା କରି ଅତ୍ୟନ୍ତ ଆନନ୍ଦ ଲାଭ କଲେ । ଏବଂ ଆନନ୍ଦସୂଚକ କେତେ କଥା କହିବାକୁ ଚେଷ୍ଟା କଲେ । କିନ୍ତୁ କୌଣସି କାରଣରୁ ବଳପୂର୍ବକ ସେହି ଆତ୍ମସନ୍ତୋଷ ଲୁଚାଇ ରଖି "ଓହୋ ! ଏମାନେ ଜୀବିତ ଅଛନ୍ତି; କେତେଦିନେ ଏମାନଙ୍କ ଦର୍ଶନ ପ୍ରାପ୍ତ ହେଲା; ଏହାଦ୍ୱାରା ଭଗବାନଙ୍କ ଆମ୍ଭ ପ୍ରତି ପୂର୍ଣ୍ଣ ଅନୁଗ୍ରହ ଥିବାର ଜଣାଯାଏ" ମନେ ମନେ ଏହି-ରୂପ ଭାବି ହେମଲତାର ନାଡ଼ୀ ପରୀକ୍ଷା କରି, କଷିତ ଦୃଷ୍ଟି ଦୋଷ ହେଲା ବୋଲି କହି, ଗୋଟିଏ ଔଷଧ ଗଳାରେ ବାନ୍ଧିବାକୁ ଦେଲେ ଏବଂ ହେମର ହସ୍ତ ଚୁମ୍ବନ କରି ବୃଦ୍ଧ ନିକଟକୁ ଯାଇ ନାନାମତେ କଥୋପକଥନ କରୁଁ କରୁଁ କହିଲେ, "ବାବୁ, ମୁଁ ତୁମ୍ଭମାନଙ୍କ ବିଷୟ ସମ୍ପୂର୍ଣ୍ଣରୂପେ ଜାଣେ; ତୁମ୍ଭେ ଜୀବିତ ଅଛ ବୋଲି ମୁ ଜାଣେ ନାହିଁ, ଆଜ ସୁଦିନ," ଏହା ଶୁଣି ବୃଦ୍ଧ ଭୟାକ୍ରାନ୍ତ ହୋଇ "ବାବୁ, ତୁ କିଏ; ମୋହ ବିଷୟ ପ୍ରଚାର କରନାହିଁ" । ଗୋସାଇଁ ବୃଦ୍ଧଙ୍କ ହସ୍ତ ଧରି କହିଲେ "ମୁଁ କିଏ, ଆପଣ କ୍ରମଶଃ ଜାଣି ପାରିବେ । ମୋହଠାରେ ଯଦି ଆପଣ ବିଶ୍ୱାସ କରନ୍ତି, ତେବେ ମୁ ଏହି ଶପଥ କରୁଅଛି ଯେ ତୁମ୍ଭ ବିଷୟ ମୁଁ କେବେ କାହାଠାରେ ପ୍ରକାଶ କରିବି ନାହିଁ । ତୁମ୍ଭେ କିଛି ଭୟ କର ନାହିଁ । ମୁ ଆଜି ଏଠାରେ ରହିବାକୁ ହେବ ନାହିଁ" ଏହିରୂପ କହି ବୃଦ୍ଧଙ୍କଠାରୁ ବିଦାୟ ଗ୍ରହଣ କରି ପ୍ରସ୍ଥାନ କଲେ । ଗୋସାଇଁ ସେହିଦିନ ଗୋବିନ୍ଦ ଶାସ୍ତ୍ରୀଙ୍କ ଘରେ

Digitized by srujanika@gmail.com

ରକ୍ଷା କରି ରହିଲେ । ସେହିଦିନ ସାୟଂକାଳରେ ଧାନ ନଗରରେ ତୁମୁଳ କୋଳାହଳ ଶ୍ରୁତିଗୋଚର ହେଲା । ପ୍ରତ୍ୟୁଷରେ ଦେଖିବା ଲୋକଙ୍କ ବିନା ଆଉ କାହାକୁ ଉକ୍ତ କୋଳାହଳ ବିଷୟ କିଛି ଜଣା ନ ଥିଲା । ସେହିଦିନ ରହିମାନ ଖାନ୍ ଯୁଦ୍ଧ ବେଶରେ କବଚ ଓ ଖଡ୍ଗ ଧାରଣ କରି, ଅଧୀନସ୍ଥ ସେବକ-ବର୍ଗଙ୍କୁ ଯୁଦ୍ଧବେଶ ଧାରଣ କରିବାକୁ ଆଦେଶ ଦେଇ, ସେମାନଙ୍କ ସମଭିବ୍ୟା-ହାରରେ ଦ୍ୱିପ୍ରହର ରାତ୍ର ସମୟରେ ଗ୍ରାମବାସିମାନେ ନିଃଶବ୍ଦରେ ନିଦ୍ରା ଯାଇ-ଥିବା ବେଳେ ବୃଦ୍ଧ ଯୋଗୀଙ୍କ ନିବାସ-ମଠ ବେଷ୍ଟନ କଲା । ସେହି ଦୁର୍ମତି ଯବନର ଆଦେଶ କ୍ରମେ ଜଣେ ସେବକ "ବାବାଜି" ବୋଲି ଡାକିବା ମାତ୍ରେ ଅପଦସ୍ତ ଓ ରୋଗ ପ୍ରପୀଡ଼ିତ କୌଣସି ବ୍ୟକ୍ତି ଆସି ଥିବାର ଅନୁମାନ କରି ବୃଦ୍ଧ ବିଳମ୍ବ ନ କରି ବ୍ୟସ୍ତ ହୋଇ ଉଠି କବାଟ ଫିଟାଇଲେ । କିନ୍ତୁ ସେହି ଦୁରାତ୍ମା ଯବନ, ସତୁରି ବର୍ଷ ବୟଃପ୍ରାପ୍ତ, ଦୁର୍ବଳ, ଜରାଗ୍ରସ୍ତ ଓ ଚଳଚ୍ଛକ୍ତି ରହିତ ବୃଦ୍ଧ ନାରାୟଣ ସିଂହଙ୍କ ହସ୍ତଧରି କର୍କଶ ସ୍ୱରରେ କହିଲା "ତୋହର ଦୌର୍ଜନ୍ୟ ଓ କୁକର୍ମ କାର୍ଯ୍ୟକଳାପ ଶ୍ରବଣ କରି ତତ୍କ୍ଷଣେ ତୋତେ ବନ୍ଧନ କରି ନେଇ କାରାରୁଦ୍ଧ କରିବା ଲାଗି ଚକ୍ରବର୍ତ୍ତୀ ଆମ୍ଭଙ୍କୁ ଆଦେଶ ପଠାଇ ଅଛନ୍ତି । ଅତଏବ ବର୍ତ୍ତମାନ ତୋତେ ବନ୍ଦୀ କରିବୁ" ଏହାପରି କହି 'ଏହାର ଦୁଇ ହାତ ପଛପଟରେ ବନ୍ଧନ କର' ବୋଲି ସେବକଙ୍କୁ ଆଜ୍ଞା ଦେଲେ । ସେହି କର୍ଣ୍ଣଶୂଳ ବଚନଗୁଡିକ ଶ୍ରବଣ କରି ବୃଦ୍ଧ ନିଶ୍ଚେଷ୍ଟ ହୋଇ "ମା, ହେମଲତା" ବୋଲି ପ୍ରଳାପ କରି, "ହାୟ ! ହାୟ ! ମୁଁ କି ଦୁଷ୍କାର୍ଯ୍ୟ କରିଅଛି; ମୋହ ଦ୍ୱାରା କି ଅପରାଧ ହୋଇପାରେ; ଚକ୍ରବର୍ତ୍ତୀଙ୍କ ଆଜ୍ଞା ମୁଁ କେବେ ଅବଜ୍ଞା କରି ନାହିଁ, ମୋତେ ଏହିରୂପ ବନ୍ଧନ କରିବା କେବଳ ଅନ୍ୟାୟ, ମୋତେ ଛାଡ଼ି ଦିଅ" ବୋଲି ଅତି ଦୈନ୍ୟ ସ୍ୱରରେ ନିବେଦନ କଲେ । କିନ୍ତୁ ବୃଦ୍ଧର କଥାରେ କର୍ଣ୍ଣ-ପାତ ନ କରି ରାଜସେବକମାନେ ତାହାର ହାତ ମୋଡି ପଛକୁ ବାନ୍ଧି ଦେଲେ । ନାରାୟଣ ସିଂହଙ୍କ ଉଚ୍ଚସ୍ୱରରେ ପରିଷଦବର୍ଗ ଦୟାର୍ଦ୍ର ହେଲେ, କିନ୍ତୁ ମୂର୍ତ୍ତିମନ୍ତ ପାପ ରହିମାନ ସେହି ବିଳାପ ଶ୍ରବଣ କରି କହିଲା "ରେ, ଦୁଷ୍ଟ, ରେ ଦୁଷ୍ଟ ବୁଢ଼ା ତସ୍କର ! ଚୁପ୍ ରହ ନଚେତ୍ କଶାଘାତ ପାଇବୁ । ଅଜ୍ଞ ଲୋକଙ୍କ ପରି ପ୍ରଳାପ କରୁଛୁ କାହିଁକି ? ତୁ ରାଜପୁତଙ୍କ ସହିତ ମିଶି ଚକ୍ରବର୍ତ୍ତୀଙ୍କ ପ୍ରତି

Digitized by srujanika@gmail.com

କୃତ୍ରିମ କାର୍ଯ୍ୟମାନ କରୁଅଛୁ । ଚୋର ଘରଠାରେ ଥିବା ମଦନ ସିଂହଙ୍କୁ ଉଦ୍ଧରିଥିବା ଗୁପ୍ତ ଚରିତ୍ର ମୁଁ ଜାଣେ । ନାଜିରଙ୍କ ତୋହର କୁଳ ଜାତି ସବୁ ଚକ୍ରବର୍ତ୍ତୀଙ୍କୁ ଗୋଚର କରାଇ ଅଛି । ସେହି ହେତୁ ତୋତେ କାରାରୁଦ୍ଧ କରିବା ପାଇଁ ଆଦେଶ ହୋଇଅଛି । ଏହା ତୋହର ନିଜକୃତ ପାପର ଫଳ ।" ଈଦୃଶ ନିଷ୍ଠୁର ବଚନ ଓ ଅପବାଦ ଏବଂ ନିଜର ଭବିଷ୍ୟତ୍ ଦୁରବସ୍ଥା ବିଷୟରେ ବିଶେଷ ଚିନ୍ତା କରୁଅଛନ୍ତି—ଏମନ୍ତ ସମୟରେ ହେମଲତା କୋଲାହଳ ଶ୍ରବଣ କରି ହଠାତ୍ ଶଯ୍ୟାତ୍ୟାଗ କରି ପିତାମହଙ୍କ ଶୟନ ଓ ନିକଟରେ କୃତାନ୍ତବତ୍ ରହିମାନଖାନଙ୍କୁ ଓ ପିତାମହଙ୍କ ବନ୍ଧନକାରୀ ଯମଦୂତବତ୍ ରାଜସେବକଙ୍କୁ ଦେଖି ଭୟାକ୍ରାନ୍ତ ହୋଇ ଖର ବେଗରେ ପିତାମହଙ୍କ ନିକଟବର୍ତ୍ତିନୀ ହୋଇ "ଦାଦା, ଦାଦା !" ବୋଲି ବିଳାପ କରି ତାହାଙ୍କୁ ଆଲିଙ୍ଗନ କଲେ । ରାଜସେବକମାନଙ୍କ, ଉଠ, ସ୍ୱାଭାବିକ ଧୈର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ତ୍ୟାଗ କରି, ଆପଦ୍‌ଗ୍ରସ୍ତ ଲୋକଙ୍କ ପରି ମୁହୁର୍ମୁହୁଃ ଉଦ୍ବେଳିତ ଦୁଃଖାବେଗ ସମ୍ବରଣ କରି ନ ପାରି ନାରାୟଣ ସିଂହ ଯୁବା ପ୍ରିୟ ପୌତ୍ରୀଙ୍କୁ କୋଳ କରି, "ମା ! ମୁଁ କାରାଗୃହକୁ ଯାଉଅଛି" କହି ନିରୀହା ଅବଳାଙ୍କ ପରି ଦୀର୍ଘସ୍ୱରରେ ବିଳାପ କରିବାକୁ ଲାଗିଲେ । ଈଦୃଶ ଦୁଃଖମଗ୍ନ ଦୁଇଜଣଙ୍କୁ ଦେଖି ନିଷ୍ଠୁର ରହିମାନ ଲେଶ ମାତ୍ର ଚିନ୍ତା ନ କରି ହେମର ସୌନ୍ଦର୍ଯ୍ୟ ଦର୍ଶନରେ ହୃଷ୍ଟ ହୋଇ, ବୃଦ୍ଧକୁ ଶୀଘ୍ର ଓଟାରି ନିଅ ବୋଲି ଅଜ୍ଞା ଦେଲା । ଇତ୍ୟବସରରେ ଗ୍ରାମ ଲୋକେ କୋଲାହଳ ଧ୍ୱନି ହେତୁ ନିଦ୍ରାତ୍ୟାଗ କରି ମଠ ନିକଟରେ ସମ୍ମିଳିତ ହୋଇ ଏହି ବିଚିତ୍ର କାଣ୍ଡ ଦର୍ଶନ କରୁଥିଲେ । ଦୁଃଖାବେଗ ସମ୍ବରଣ କରି ନ ପାରି ପିତାମହଙ୍କ ଗଳଦେଶ ନିଜର କୋମଳ ବାହୁ ଲତିକା ଦ୍ୱାରା ବନ୍ଧନ କରି ବିଳାପ କରୁଥିବା ହେମଲତାକୁ ବୃଦ୍ଧଠାରୁ ଅନ୍ତର କରିବା କଷ୍ଟସାଧ୍ୟ ମନେକରି ନିଷ୍ଠୁର ଯବନମାନେ ବୃଦ୍ଧଙ୍କ ଓଟାରିବା ବେଳେ ପାପିଷ୍ଠ ନନ୍ଦ ସେହି କନ୍ୟାର ହସ୍ତ ଦ୍ୱୟରେ କଶାଘାତ କଲା— ସେହି ଆଘାତରେ ହେମ ବୃଦ୍ଧଙ୍କୁ ଛାଡିଦେଲା । ପରେ ନାରାୟଣ ସିଂହଙ୍କୁ ତତ୍‌କ୍ଷଣାତ୍ ଟାଣି ନେବାର ଦେଖି, "ହାୟ ! ହାୟ ! ମୁଁ କପର ହୋଇବି ! ବାବୁ ! ମତେ କାହାକୁ ସମର୍ପଣ କରି ଯାଉଅଛ ? ମୋହର କି ଗତି ? ମତେ ତାହାଙ୍କ ସଙ୍ଗରେ ନେଉ ନାହଁ ? ମୁଁ ନିଶ୍ଚେ ପ୍ରାଣତ୍ୟାଗ କରିବ; କଦାପି ବଞ୍ଚିବି ନାହିଁ ।

Digitized by srujanika@gmail.com

ଦାଦା ! ବଞ୍ଚି ରହୁନାହିଁ କାହିଁକି ?" ହା ଏପରି ହୃଦୟସ୍ପର୍ଶୀ ଦୀନସ୍ୱରରେ ବିଳାପ କରୁ କରୁ ମୂଳଚ୍ଛେଦିତ ବୃକ୍ଷବତ୍ ଭୂମିରେ ପଡ଼ି ହେମ ମୂର୍ଚ୍ଛିତା ହେଲା । ହେମ ମୁମୂର୍ଷୁ ଅବସ୍ଥାରେ ଥିବା ସମୟ ମଧ୍ୟରେ ଯବନମାନେ ବୃଦ୍ଧଙ୍କୁ ନେଇଗଲେ । ରହିମାନଖାନ୍ କେତେଜଣ ସେବକଙ୍କୁ ଡାକି କହିଲେ "ଏହି ବୃଦ୍ଧକୁ ନଗରକୁ ନେଇ କାରାରୁଦ୍ଧ କର । ମୁଁ ଅଳ୍ପ କାଳ ମଧ୍ୟରେ ଆସୁଅଛି । ମୋର ଆଉ କିଛି କାର୍ଯ୍ୟ ଅଛି ।" ପରେ ଦୁଇଜଣ ସେବକଙ୍କୁ ହେମଲତାଙ୍କ ଘରଠାରେ ଜଗାଇ ସେ ଅପର ସାହିକୁ ଗଲେ । ସେହି ସବୁ ମଠ ନିକଟରେ ଏକତ୍ରିତ ଗ୍ରାମବାସୀମାନେ ହେମଲତା ଓ ନାରାୟଣ ସିଂହଙ୍କ ଦୁରବସ୍ଥା ସନ୍ଦର୍ଶନ କରି ଅଶ୍ରୁପୂର୍ଣ୍ଣ ଲୋଚନରେ ଯବନମାନଙ୍କୁ ନିନ୍ଦା ନକରି ରହି ପାରିଲେ ନାହିଁ, କିନ୍ତୁ ଶସ୍ତ୍ରଧାରୀ ଯବନମାନଙ୍କୁ ଭୟ କେହି ସାହାସପୂର୍ବକ ସେହି ଦୌର୍ଜନ୍ୟ ନିବାରଣ କରି ପାରିଲେ ନାହିଁ । ମୂର୍ଚ୍ଛିତା ହେମଲତା ଶରୀରଜ୍ଞାନ ହରାଇ ଦୁଇ ତିନି ଥର "ବାବୁ ! ବାବୁ ! ସବୁ ଶେଷ ହେଲା, ଉଠ ମଦନ ସିଂହ ! ମଦନ ସିଂହ !" ବୋଲି ବିହ୍ୱଳିତ ହୋଇ ପୁନର୍ପି ମୂର୍ଚ୍ଛା ଗଲେ । ଗ୍ରାମବାସୀମାନେ ଖାନ୍‌ସାହେବର କ୍ରୋଧାଗ୍ନିକୁ ଡ଼ରି ହେମକୁ ସାହାଯ୍ୟ କରିବାକୁ ଭରସି ନପାରି କ୍ରମଶଃ ଜଣେ ଜଣେ ଯେ ଯାହା ଘରକୁ ବାହାରି ଗଲେ । ଜଣେ ସୁଦ୍ଧା ସେଠାରେ ରହିଲେ ନାହିଁ । ଜଣେ ନିଷ୍ଠୁର ଯବନ ସପରିବାରରେ ବାସ କରିଥିବା ମହମ୍ମଦୀୟମାନଙ୍କ ନିବାସ ସ୍ଥଳଠାକୁ ଯାଇ ଅବ୍‌ଦୁଲ୍‌କରିମ ମୌଲବୀଙ୍କ ଗୃହ ବେଷ୍ଟନ କରି ନିଦ୍ରିତ ମୌଲବୀଙ୍କୁ ବନ୍ଧନ କଲା । ମୌଲବୀଙ୍କ ଦାସପୁଏାଦ କିଂକର୍ତ୍ତବ୍ୟବିମୂଢ଼ ହୋଇ ହଠାତ୍ ପ୍ରଳାପ କରିବାକୁ ଲାଗିଲେ । ସେହି ସାହିର ସମସ୍ତ ଲୋକେ ଉଠି ଆସି ଖାନସାହେବଙ୍କୁ କାରଣ ପଚାରନ୍ତେ ପ୍ରଥମେ ନିରୁତ୍ତର ହୋଇ ଶେଷକୁ ନମ୍ର ମତେ କହିଲା; "ଏହି ବ୍ୟକ୍ତି ମହମ୍ମଦୀୟ ହୋଇ ହିନ୍ଦୁଙ୍କ ସହିତ ସ୍ନେହ କରୁଅଛି । ବିଜାତୀୟ ପର ବ୍ୟବହାର କରିବାଠାରେ ଏହି ପାପାତ୍ମା ପ୍ରକୃତ ମହମ୍ମଦୀୟ ହୋଇପାରେ କି ? ଏବାଦ୍ ରାଜପୁତଙ୍କ ସହିତ ମିଶି ଅମ୍ଭ ଚକ୍ରବର୍ତ୍ତୀଙ୍କ ବିରୁଦ୍ଧରେ କୁତ୍ସିତ କାର୍ଯ୍ୟମାନ କରୁଅଛି । ସ୍ୱଧର୍ମ ବିରୋଧୀ ଓ ରାଜଦ୍ରୋହୀ ଏହି ଦୁଷ୍ଟାତ୍ମାକୁ ବନ୍ଦୀ କରିବା ପାଇଁ ମୋଠାକୁ ଚକ୍ରବର୍ତ୍ତୀଙ୍କ ଆଦେଶ ଆସିଅଛି । ଅତଏବ ଏହାକୁ ବନ୍ଧନ କଲି ।" ଏହା କହି ମୌଲବୀଙ୍କୁ କାରା-

Digitized by srujanika@gmail.com

ଦୂତକୁ ପ୍ରେରଣ କଲା । କାମାତୁର ଓ ଈର୍ଷାଗ୍ନିପୀଡ଼ିତ ରହମାନ ଏକ ଘଣ୍ଟା ମଧ୍ୟରେ ନଗର ଶତ୍ରୁଦ୍ୱୟଙ୍କୁ ବନ୍ଧନ କରିପାରିଥିବା ଯୋଗୁଁ ଆନନ୍ଦିତ ଓ ସଫଳମନୋରଥ ହୋଇ, ଉକ୍ତ ଦ୍ୱେଷୀଦ୍ୱୟଙ୍କୁ ଏକ ପ୍ରକୋଷ୍ଠରେ ଅବରୋଧ ରଖିଲା । ଏବଂ ରାତ୍ର ଶେଷରେ ଏକାକୀ ବାବାଜୀଙ୍କ ମଠକୁ ଗଲା । ସେହିଠାରେ ଦେଖିଲା ଯେ ସେ ଜାଗ୍ରତ ଥିବା ସେବକଦ୍ୱୟ ଗାଢ଼ ନିଦ୍ରା ଅଭିଭୂତ ଅଛନ୍ତି ହେମଲତା ପ୍ରଥମେ ମୂର୍ଚ୍ଛିତା ହେବା ସ୍ଥାନରେ ନଥିବାରୁ ଭିତରକୁ ଯାଇ ଦେଖିଲା, ସେଠାରେ ସୁଦ୍ଧା ନାହିଁ । ପରେ ଘରର ଚତୁଷ୍ପାର୍ଶ୍ୱ, ଚାଳ, ପିଣ୍ଡା ପ୍ରଭୃତି ସକଳ ସ୍ଥାନ ନିଜେ ବୁଲି ଖୋଜିଲା । କିନ୍ତୁ ହେମଲତାକୁ କେଉଁଠାରେ ନପାଇ, ନିରାଶ ଓ ଦୁଃଖିତ ହୋଇ ସାଙ୍ଗେ ଥିବା ଶରୀରରକ୍ଷକ ଦ୍ୱାରା, ନିଦ୍ରିତ ସେବକଙ୍କୁ ପାଦାଘାତକରି ଉଠାଇ "ହେମଲତା କାହିଁ" ବୋଲି ପଚାରିଲା । ସେମାନେ କାତର ଓ ନିରୁତ୍ତର ହୋଇ ଅନାଇଁ ରହିଲେ । ସେମାନଙ୍କୁ ପଦାଘାତଦେଇ ଖାନ ନଗରକୁ ଫେରିଗଲେ । ନିଜ ପ୍ରକୋଷ୍ଠ ମଧ୍ୟ ଶଯ୍ୟାପରେ ଉପବିଷ୍ଟ ହୋଇ ସେହି ଗ୍ରାମର, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ କିମ୍ବା ଶୂଦ୍ର ହବେଲଦାର ନଗର ପ୍ରତ୍ୟେକ ଘର, ହାଡ଼ି ଦଣ୍ଡାଶୀଙ୍କ କୁଡ଼ିଆ, ପଠାଣଙ୍କ ଆଲୟ, କୂପ, ବଣ, ଅଖାଡ଼ା ପ୍ରଭୃତି ସକଳସ୍ଥାନ ଖୋଜାଇଲା । କିନ୍ତୁ ହେମ କାହିଁ ଦେଖାଗଲାନାହିଁ । ପରିଶେଷରେ ଆଶାଶୂନ୍ୟ ହୋଇ କ୍ରୋଧ ଶାନ୍ତି ସକାଶେ, ଜଗୁଆଳିଙ୍କ ଅସାବଧାନତାରୁ ହେମଲତା ସ୍ଥାନାନ୍ତରିତ ହୋଇଅଛି ବୋଲି ସେହି ସେବକଙ୍କୁ ଡକାଇ ତହିଁରୁ ଜଣେ ଅଯତ୍ନ ଉପକାରୀ ବୋଲି ତାହାକୁ କ୍ଷମାକରି ଅନ୍ୟଙ୍କୁ ପ୍ରାଣ ଦଣ୍ଡ ଦେଲା ।

ହାୟ ! ଚିରକାଳ ବାଟଚଳି ଯାହାଙ୍କୁ ବଧକରି ଖାନଙ୍କ ପ୍ରୀତି ସମ୍ପାଦନ-କାରୀ ଗୁଲମଅଲିର ଆଜଦିନ ମରଣ ଅନିବାର୍ଯ୍ୟହେଲା । ତାହାକୁ ଗଛରେ ବାନ୍ଧି ଖାନ୍ ସ୍ୱହସ୍ତରେ ତାହାର ଶିରଃଚ୍ଛେଦନ କଲା । ଏଥିରେ ସୁଦ୍ଧା ମନର ଶାନ୍ତି ନଲଭି, ଉନ୍ମାଦ ଲୋକଙ୍କପରି ଏଣେ ତେଣେ ହୋଇ କେବେ କେବେ ନିଜ ଦାଢ଼ି ଅଉଁଷି, ମୁଣ୍ଡରୁ ଟୋପି କାଢ଼ି ପାଦରେ ମର୍ଦ୍ଦନକରି, ନିକଟସ୍ଥ ସେବକମାନଙ୍କୁ ତିରସ୍କାର କରୁଥିଲା । ବାସଗୃହ ନିକଟକୁ ଯାଇ ହେମଲତା ବିଷୟରେ ନାରାୟଣ ସିଂହଙ୍କୁ ପ୍ରଶ୍ନକରି, ତାହାଙ୍କୁ ପ୍ରାଣଦଣ୍ଡ ଦେବବୋଲି ଡରାଇ, ଖାଦ୍ୟପାନ

Digitized by srujanika@gmail.com

ଭାଗିନେୟ ଖାନ୍ ବିବିଧ ଶରୀର ବେଦନା ଭୋଗ କରିବାକୁ ଲାଗିଲା । ଏଣେ ସୁଧା ତହିଁ ଆରଦିନ ପ୍ରାତଃ କାଳରେ ଉଠି ହେମଲତାର ଘରକୁ ଯାଇ ଦେଖିଲା ଯେ ହେମର ଆବାଲ୍ୟ ପାଳିତ ଶୁକ ଓ ବିବିଧ କ୍ରୀଡ଼ା ଦ୍ରବ୍ୟସବୁ ଏବଂ ବୃଦ୍ଧଙ୍କ ଚାରପଙ୍ଗ ଔଷଧ ମୁଣି ଓ ହାତ ବାଡ଼ି ଏଣେତେଣେ ପଡ଼ିଅଛି । କଠିଣ ହୃଦୟା ହେଲେହେଁ ସୁଧା ସ୍ତ୍ରୀ ଜାତିର ସ୍ୱାଭାବିକ କରୁଣ ଗୁଣ ଘଟନପାଇଁ ପ୍ରଥମେ କିଞ୍ଚିତ ସନ୍ତପ୍ତ ହେଲା । ପରେ ଘରଯାକ ଖୋଜ ହେମ ମ୍ଳେଚ୍ଛଙ୍କ କରଗତ ହୋଇ ଥିବାର ଅନୁମାନକରି, "ମୋର ମନୋରଥ ପୂର୍ଣ୍ଣହେବ" ବୋଲି ଆନନ୍ଦିତ ହୋଇ ହେମଲତାର ସକଳ ପଦାର୍ଥ ଅନ୍ୱେଷଣ କରି ବସିଲା । ପେଟରାଟି ( ପେଡ଼ି ) ରେ ପେଡ଼ା ଫିଟାଇ ତନ୍ମଧ୍ୟସ୍ଥ କ୍ଷୁଦ୍ର ସିନ୍ଦୁକ ଖୋଲି ହେମଲତାର ଆଭରଣ ସବୁ ଦେଖି ତହିଁରେ ଦୁଇଗୋଟି ପତ୍ର ପାଇ, ତାହା ଧୀରେଧୀରେ ପାଠକରି ଅଳଙ୍କାର ଅପେକ୍ଷା ଉକ୍ତ ପତ୍ର ପ୍ରାପ୍ତିରେ ଅଧିକ ସନ୍ତୋଷ ଲାଭକରି କେହି ନ ଦେଖୁଣୁ ଘରକୁ ଘେନିଗଲା ।

ମଦନୋନ୍ମତ୍ତ କପୁ ଶାର୍ଣ୍ଣୀଙ୍କ ରହମାନ୍ ଅଲାଉଦ୍ଦୀନ ଚକ୍ରବର୍ତ୍ତୀଙ୍କ ଠାରୁ ଗୋଟିଏ ପରବାନା ପ୍ରାପ୍ତହେଲା । ଚିତୋର ଦେଶପ୍ରତି ଯୁଦ୍ଧ ଯାତ୍ରା କରିବାନିମିତ୍ତ କିଲାଦାର ମାନଙ୍କ ସହିତ ବିବେଚନା କରିବା ପାଇଁ ଖାନ ସାହେବଙ୍କୁ ଆସିବାକୁ ସେ ଲେଖିଥିଲେ । ଚକ୍ରବର୍ତ୍ତୀଙ୍କ ଆଜ୍ଞା ଅବଜ୍ଞା କରିବାର ଉ ଏତତ୍ପ୍ରାନ୍ତ ମଧ୍ୟରେ ଦିଲ୍ଲୀ ନଗରକୁ ଯିବାକୁ ନିଶ୍ଚୟକରି ନାରାୟଣ ସିଂହ ଓ ମୌଲବୀଙ୍କୁ ଘେନିବାକୁ ହେବନାହିଁ ବୋଲି ସେବକଙ୍କୁ ଆଦେଶ ଦେଇ ସେହି ଠାରୁ ପ୍ରସ୍ଥାନ କଲେ । ଗ୍ରାମ ବାସିମାନେ ହେମଲତା ଆତ୍ମହତ୍ୟା କରିଅଛି ବୋଲି ସ୍ଥିରକଲେ ।

---

## ପଞ୍ଚମ ଅଧ୍ୟାୟ ।

—:o:—

ମହମ୍ମଦୀୟ ରଜାମାନେ ଭାରତ ଶାସନ କଲାବେଳେ ଦିଲ୍ଲୀ ନଗର ପ୍ରଧାନ ରାଜଧାନୀ ହୋଇଥିଲା । ଏହି ଦିଲ୍ଲୀ ଚକ୍ରବର୍ତ୍ତୀମାନେ ଏତଦ୍ଦେଶୀୟ ରଜାମାନଙ୍କୁ, ନାନାବିଧ କଷ୍ଟ ଦେଇଥିଲେ । ଏହି ଦିଲ୍ଲୀଶ୍ୱରମାନେ ହିମାଳୟଠାରୁ ଦକ୍ଷିଣ

Digitized by srujanika@gmail.com

ସମୁଦ୍ର ପର୍ଯ୍ୟନ୍ତ ସମସ୍ତ ଭାରତଖଣ୍ଡ ଏକଚ୍ଛନ୍ନ ପାଳନ କରିଥିଲେ । ଗଜନୀ ମହମ୍ମଦ ହିନ୍ଦୁ ଦେଶ ପ୍ରତି ଦ୍ୱାଦଶବାର ଦଣ୍ଡଯାତ୍ରା କରି ଦେଶବାସିଙ୍କୁ ବ୍ୟାକୁଳ, ଲକ୍ଷ୍ମୀଙ୍କୁ ନିଜ କରଗତ ଏବଂ ଦାରିଦ୍ର୍ୟ ପିଶାଚକୁ ଏହି ଦେଶରେ ପ୍ରତିଷ୍ଠିତ କରିଥିଲେ । ତତ୍ପରେ ମହମ୍ମଦ ଘୋରି ଦିଲ୍ଲୀଚକ୍ରବର୍ତ୍ତୀ ପୃଥୁ ରାଜାଙ୍କୁ ଥାନେ-ଶ୍ୱର ଯୁଦ୍ଧରେ ବଧକରି ସମଗ୍ର ଭାରତ ଆକ୍ରମଣ କଲେ । ତାହାଙ୍କ ପରଲୋକ ଗମନାନନ୍ତର ଦାସ ରାଜାମାନେ ୧୨୦୬ ଠାରୁ ୧୨୮୦ ଶକାବ୍ଦ ପର୍ଯ୍ୟନ୍ତ ଉତ୍ତର ହିନ୍ଦୁସ୍ଥାନ ପାଳନ କଲେ । ସେମାନେ ବଳହୀନ ହେବାରୁ ବୃଦ୍ଧ ଜଲାଲୁଦ୍ଦିନ ନିଜ ବଳରେ ସେମାନଙ୍କୁ ପରାସ୍ତକରି, ସିଂହାସନାରୂଢ଼ହୋଇ ଖିଲିଜି ବଂଶ ସ୍ଥାପନ କଲେ । ଜଲାଲୁଦ୍ଦିନ୍ ୧୨୮୦ ରୁ ୧୨୯୫ ଶକାବ୍ଦ ପର୍ଯ୍ୟନ୍ତ ଶାସନ କଲେ । ତାହାଙ୍କ ଶାସନକାଳ ଅତିଅଳ୍ପ ହେଲେସୁଦ୍ଧା, ତାହାଙ୍କ ସମୟରେ ୧୨୮୪ ଶକାବ୍ଦରେ ମହମ୍ମଦୀୟମାନେ ପ୍ରଥମେ ଦକ୍ଷିଣ ହିନ୍ଦୁସ୍ଥାନ ପ୍ରତି ଦଣ୍ଡଯାତ୍ରା କରିଥିଲେ । ଏହି ଦଣ୍ଡଯାତ୍ରାରେ ଜଲାଲୁଦ୍ଦିନଙ୍କ ଭ୍ରାତୃଷ୍ପୁତ୍ର, କପଟୋ-ପାୟ ଧୁରନ୍ଧର ଓ କୂଟରାଜନୀତିବିଶାରଦ ଅଲାଉଦ୍ଦିନ୍ ସେନାପତି ହୋଇ ମହାରାଷ୍ଟ୍ର ଦେଶ ଆକ୍ରମଣ କଲେ । ସେହି ସମୟରେ ମହାରାଷ୍ଟ୍ର ଦେଶରେ ଦେବଗିରି ପ୍ରଧାନ ରାଜଧାନୀ ହୋଇଥିଲା । ଅଲାଉଦ୍ଦିନ୍ ମହାରାଷ୍ଟ୍ର ଦେଶାଧିପ ରାମଦେବଙ୍କୁ ପରାଜୟକରି, ଆପଣାକୁ ଦିଲ୍ଲୀ ରାଜ୍ୟାଗାରର ଉତ୍ତରାଧିକାରୀ ବୋଲି ପରିଚୟ ଦେଇ, ଅନେକ ନଗର ଲୁଣ୍ଠନ କରି ପ୍ରଚୁର ପରିମାଣରେ ଲୁଣ୍ଠିତ ଦ୍ରବ୍ୟ ଓ ଉପହାର ସହିତ ନିଜ ପିତୃବ୍ୟ ଜଲାଲୁଦ୍ଦିନଙ୍କୁ ଭେଟିବାକୁ ଦିଲ୍ଲୀ ପ୍ରତ୍ୟାଗମନ କଲେ । କିନ୍ତୁ ପ୍ରତ୍ୟାବୃତ୍ତ ହେବାମାତ୍ରେ ପିତୃବ୍ୟଙ୍କୁ ବଧକରି ନିଜେ ଚକ୍ରବର୍ତ୍ତୀ ହେବାର ବାସନା ପୋଷଣ କରି ଅପାର ସେନାର ଅଧ୍ୟକ୍ଷ ଥିବା-ଯୋଗୁଁ ସୁଲଭରେ ମନୋରଥ ସାଧନକରି ମହା ଆଡ଼ମ୍ବରରେ ୧୨୮୫ ଶକାବ୍ଦରେ ଦିଲ୍ଲୀ ସିଂହାସନ ଅଧିକାର କଲେ । ଏବଂ ୧୮୦୫ ସାଲ ପର୍ଯ୍ୟନ୍ତ ରାଜ୍ୟ ଶାସନ କଲେ । ସେ ଲୌକିକ ବ୍ୟବହାର ଉତ୍ତମରୂପେ ଜାଣିଥିଲେ କିନ୍ତୁ ଅତିଶୟ କୁଟିଳସ୍ୱଭାବ ଥିଲେ । କାର୍ଯ୍ୟସାଧନରେ ଅତି କୌଶଳୀ କିନ୍ତୁ ନୀତିବହୀନ । ସେ ପ୍ରାୟ ସମସ୍ତ ଉତ୍ତର ହିନ୍ଦୁସ୍ଥାନ ସ୍ୱାଧୀନ କରିଥିଲେ, ମାତ୍ର ରାଜପୁତମାନଙ୍କ ଦେଶ ଜୟ କରିପାରି ନଥିଲେ । ସିଂହାସନ ଆରୋହଣ କରିବା ସମୟକୁ, ଦକ୍ଷି-

Digitized by srujanika@gmail.com

ଶରେ କେବଳ ମହାରାଷ୍ଟ୍ର ଦେଶ ଛଡ଼ା ଆଉ କେହି ତାଙ୍କର ସ୍ୱାଧୀନ ନଥିଲା । ମହାରାଷ୍ଟ୍ରୀୟ ରାଜା ରାମଦେବ ଦେବଗିରି ପରିପାଳନ କରୁଥିଲେ । ତିଲଙ୍ଗ-ଦେଶରେ କାକତୀୟ ବଂଶର ରାଜାମାନେ ଶାସନ କରୁଥିଲେ । ଭିଲ ବଂଶଜ-ମାନେ ଦ୍ୱାର ସମୁଦ୍ରଠାରୁ ମହୀଶୂର ପର୍ଯ୍ୟନ୍ତ ଶାସନ କରୁଥିଲେ । କର୍ଣ୍ଣାଟ ଉପସ୍ଥ ରାଜବଂଶୀୟଙ୍କ ଅଧୀନ ଥିଲା । ରାଜସ୍ଥାନ ଓ ଦକ୍ଷିଣ ଭାରତ ଜୟକରିବାକୁ ଅଲାଉଦ୍ଦୀନ ବହୁକାଳରୁ ଇଚ୍ଛା କରିଥିଲେ । ମାଲିକାଫର ନାମକ ଯୋଦ୍ଧାଙ୍କୁ ସେନାଧିପତି କରି ବହୁ ସୈନ୍ୟ ସମଭିବ୍ୟାହାରରେ ଦକ୍ଷିଣ ଦେଶକୁ ପ୍ରେରଣ କଲେ । ସେ ନିଜ ପ୍ରଭୁଙ୍କ ପରି ଗୁଣ-ସମ୍ପତ୍ତିଶାଳୀ ହୋଇ ଥିବା ଯୋଗୁ ବିନ୍ଧ୍ୟ ମାଲ୍ୟୋପାନ୍ତରେ ତଦ୍ଦେଶୀୟ ରାଜାଙ୍କୁ ପରାଜୟକରି ରାମେଶ୍ୱର ପର୍ଯ୍ୟନ୍ତ ବିଶାଳ ରାଜ୍ୟ ସ୍ୱାଧୀନକରି ଅନେକ ରାଜକୁଟୁମ୍ବ ନିର୍ମୂଳ କଲେ । ସେ ଦକ୍ଷିଣ ଦେଶରେ ଥିବା ସମୟରେ ଦିଲ୍ଲୀ ଚକ୍ରବର୍ତ୍ତୀ ରାଜସ୍ଥାନ ପ୍ରତି ଦଣ୍ଡଯାତ୍ରା କରିବା-ପାଇଁ ମନସ୍ଥ କରି କଟକସ୍ଥ ସୈନ୍ୟକୁ ବହୁଦିନଠାରୁ ଯୁଦ୍ଧପାଇଁ ସିଦ୍ଧକରାଇ, ଅନ୍ୟାନ୍ୟ ସ୍ଥାନମାନଙ୍କରୁ ସୈନ୍ୟ ସାମଗ୍ରୀ ଆଣାଇ, ଅଶ୍ୱ, ଗଜ ଇତ୍ୟାଦି ଯୁଦ୍ଧୋପଯୋଗୀ ପଦାର୍ଥ ସବୁ ବନ୍ଦୋବସ୍ତ କରାଉ ଥିଲେ । ଏକଦା ସାୟଂକା-ଳରେ ସନ୍ଧ୍ୟାରାଗ ଦିଲ୍ଲୀ ପ୍ରାସାଦ ଶିଖରସ୍ଥ ରକ୍ତପତାକାପରି ବିରାଜମାନ ହୋଇ-ଥିଲା । ସେହି ସନ୍ଧ୍ୟାରାଗ କ୍ରମଶଃ ଅଦୃଶ୍ୟହୋଇ ନିର୍ମଳ ଚନ୍ଦ୍ରକିରଣ ଦିଗନ୍ତ ବ୍ୟାପିଗଲା । ନୀଳ ଯମୁନା ଜଳରେ ଦିଲ୍ଲୀ ନଗର ପ୍ରାସାଦ, ଅଟ୍ଟାଳିକା ସମୂହ ପ୍ରତିବିମ୍ବିତହୋଇ ପୌରାଣିକ ବରୁଣାଳୟପରି ଶୋଭାପାଉଥିଲା । ସନ୍ଧ୍ୟା ସମୟରେ "ନମାଜ" ( ଉପାସନା ) କରିବାପାଇଁ ଭକ୍ତଙ୍କୁ ଡାକିବା ଧ୍ୱନିରେ ମସଜିଦ ପ୍ରତିଧ୍ୱନିତ ହେଲା । ମସଜିଦର ଅଗ୍ରଭାଗ ଓ ହିନ୍ଦୁ ଦେବାଳୟମାନଙ୍କ ଚୂଡ଼ାଶୋଭା ନୀଳବର୍ଣ୍ଣ ଚନ୍ଦ୍ର କିରଣରେ ପ୍ରକାଶିତ ହୋଇ ଦିଲ୍ଲୀ ନଗରର ଉନ୍ନତାବସ୍ଥା ଦର୍ଶାଉଥିଲା । ନଗର ମଧ୍ୟଭାଗରେ ଚକ୍ରବର୍ତ୍ତୀଙ୍କ ନିବାସ ସପ୍ତତଳ ବୃହତ୍ ସରୋବରସ୍ଥ ବିକଶିତ ପଦ୍ମପୁଷ୍ପପରି ବିରାଜିତ ଥିଲା । ସେହି ଗୃହ ଏକପ୍ରହର ଉପରୁ ଚକ୍ରବର୍ତ୍ତୀ ରହସ୍ୟାଳାପ କରି ନିଜ ପ୍ରକୋଷ୍ଠ ମଧ୍ୟରେ ଗୋଟିଏ ସୁଗଠିତ

Digitized by srujanika@gmail.com

ତକ୍ତ ଉପରେ ତକିଆମାନ ଡେରି ଧୂମପାନ କରୁଅଛନ୍ତି—ଏମନ୍ତ ସମୟରେ ଜଣେ ଘର୍ମାକ୍ତ ଓ ରୁକ୍ଷକେଶୀ ଅନ୍ତଃପୁର ସେବକ ଅତି ବ୍ୟାକୁଳତାବଶତଃ ଗୃହରେ ପ୍ରବେଶ କରି ଚକ୍ରବର୍ତ୍ତୀଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଉଚ୍ଚ ଓ କାତର ସ୍ୱରରେ କହିଲା "ମହାପ୍ରଭୁ ! ଶ୍ରୀଯୁକ୍ତଙ୍କ ସେବକର ଗୋଟିଏ ଜଣାଣ ଅଛି"। ତାହା ଶୁଣି ବଚନଭ୍ରଷ୍ଟ ଚକ୍ରବର୍ତ୍ତୀ ଅତ୍ୟନ୍ତ କୁପିତ ହୋଇ, ସେବକକୁ ପଦାଘାତ କରି "ରେ, ଭୃତ୍ୟ ! କାହିଁକି ବୃଥା ପ୍ରଳାପ କରୁଅଛୁ" ବୋଲି ଅତି ଭୟଙ୍କର ପାଟି କଲେ । ସେବକ ଭୟରେ କମ୍ପିତ ହୋଇ କହିଲା, "ସ୍ୱାମି, ପାଲି ଶିବିରର ରହମାନଖାନ ଆସିଅଛନ୍ତି; ଆଜ୍ଞା ହେଲେ ଦର୍ଶନ କରା-ଇବ"। ଚକ୍ରବର୍ତ୍ତୀଙ୍କ ଅଙ୍ଗୀକାରସୂଚକ ସଙ୍କେତ ବୁଝି ପାରି, ସେବକ ଖାନ୍‌ଙ୍କୁ ଭିତରକୁ ଛାଡିଦେଇ ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇ ରହିଲା । ଖାନ୍ ପାଲି ଗ୍ରାମରେ ଦେଖାଉଥିବା ଅହଙ୍କାର ତ୍ୟାଗ କରି ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ଦଣ୍ଡ ପ୍ରଲମ୍ବିତ ହୋଇ ସାଲାମ କଲେ । ତାହାକୁ ଦେଖିବା ମାତ୍ରେ ନାଜର-ଜଙ୍ଗ୍‌ଙ୍କଠାରୁ ଶୁଣିଥିବା ତାହାଙ୍କ ଦୁଷ୍କର୍ମ ସ୍ମରଣ କରି ଚକ୍ରବର୍ତ୍ତୀ କୋପ ପ୍ରଜ୍ୱଳିତ ହୋଇ କହିଲେ "ରେ ! ରାଜ-ଦ୍ରୋହୀ, ଆମ୍ଭ ଦେଶର ଦ୍ରବ୍ୟ ଲୁଣ୍ଠନ ଓ ସାମନ୍ତମାନଙ୍କୁ କ୍ଳେଶ ଦେବାକୁ ପୁଣି ତୋତେ ଏହି ଅଧିକାର ଦେଇଥିଲା; ଛି, ଛି, ତୋହର ମୁଖାବଲୋକନ କରିବା ଅନୁଚିତ; ତୁ ଆମ୍ଭ ସମ୍ମୁଖରୁ ଅନ୍ତର ହୁଅ"। ଏହା କହି ପଦାଘାତ କରି ତାହାକୁ ଦୂର କଲେ । ତହିଁରେ ଖାନ୍ ଅବଳା ପରି ବିଳାପ କରି କରି ଉଚ୍ଚୈଃସ୍ୱରରେ କହିଲା "ହେ ମହାମହିମ ପ୍ରଜା ସଂରକ୍ଷକ ! ହେ ସକଳ ଜନ ପ୍ରତିପାଳକ ! ମୁଁ ଶ୍ରୀଯୁକ୍ତଙ୍କ ଦାସାନୁଦାସ, ମୁଁ କୌଣସି ଦ୍ରୋହ କରିନାହିଁ । ଅକାରଣରେ ମୋହର କୌଣସି ଶତ୍ରୁ ମୋହ ପ୍ରତି ବୃଥା ଦୋଷାରୋପଣ କରୁଅଛି ।" ସେହି ଦୁଷ୍ଟାତ୍ମାର ବୈକଲ୍ୟ ଦେଖି ଚକ୍ରବର୍ତ୍ତୀ କିଞ୍ଚିତ୍ କୃପା ପ୍ରକାଶ କରି କହିଲେ । "ତୁ ଦୋଷୀ ନୋହୁ ବୋଲି ପ୍ରମାଣ ଦେଇ ପାରିବୁ କି ? ତଦ୍ରୂପ କରି ପାରିଲେ ତୋହର ପ୍ରାଣ ରହିବ । କାଲି ସାୟଂକାଳ ପର୍ଯ୍ୟନ୍ତ ତୋତେ ସମୟ ଦେଲୁଁ । କାଲି ଶନି ଦରବାର ହେବ । ସେହି ସମୟକୁ ତୁ ପ୍ରସ୍ତୁତ ରହ ।" ଏହି କଥା ଶୁଣି ଖାନ୍ ମନଃଶାନ୍ତି ଲଭି ପରମ ସନ୍ତୁଷ୍ଟ ହୋଇ କହିଲା, "ମହାପ୍ରଭୋ ! ସର୍କାର ଧର୍ମମୂର୍ତ୍ତି । ମୁଁ

Digitized by srujanika@gmail.com

ବିଦ୍ରୋହୀ ବୋଲି ତାଙ୍କ ସମ୍ରାଟଙ୍କୁ ଅବଶ୍ୟ ପ୍ରମାଣ ଦେଇ ପାରିବ । ଏବଂ ରାଜସ୍ଥାନ ଦଣ୍ଡଦାତା ସମ୍ବନ୍ଧେ ଅନେକ ରହସ୍ୟ ବିଷୟକ ପତ୍ରଗୁଡ଼ିଏ ମୋହ-ଠାରେ ଅଛି—ସେ ସବୁ ସମ୍ରାଟ ସମ୍ମୁଖରେ ଦାଖଲ୍ କରିବି । ତେବେ ମୋହର ଅଚ-ରଣ ବିଷୟ ସ୍ତ୍ରୀ ସର୍କାର ନିଶ୍ଚେ ଜାଣି ପାରିବେ । ବର୍ତ୍ତମାନ ମୋତେ ବିଦାୟ ଦିଅନ୍ତୁ ।” ଏହି କଥା ଶୁଣି ଚକ୍ରବର୍ତ୍ତୀ ଆଶ୍ୱସ୍ତ ଜାତ, ଅତି ଆନନ୍ଦରେ ଖାନ୍ ପ୍ରତି ଦୃଷ୍ଟି ନିକ୍ଷେପ କରି କହିଲେ “ତୋହ୍ର ଠାରେ ଥିବା ପତ୍ରଗୁଡ଼ିକ ଏହି କ୍ଷଣ ଅମ୍ଭଙ୍କୁ ଦେଖାଇବାକୁ ହେବ; ସେ ଗୁଡ଼ିକ ଦେଖିବା ପର୍ଯ୍ୟନ୍ତ ଅମ୍ଭର ମନ ସ୍ଥିର ହେବ ନାହିଁ । ତୁ ଅତି ଶୀଘ୍ର ଯାଇ ସେଗୁଡ଼ିକ ଆଣ” । ଚକ୍ରବର୍ତ୍ତୀଙ୍କ ଆଜ୍ଞା ଶ୍ରବଣ କରି ଖାନ୍ ଏଥର ମନୋଭାବ ପ୍ରକାଶ କରି ବିଦାୟ ନେଇ ଚାଲିଗଲେ ।



## ଷଷ୍ଠ ଅଧ୍ୟାୟ ।



ବର୍ତ୍ତମାନ ପୃଥିବୀରେ ବିଦ୍ୟମାନ, ପୁରାତନ ଶିଳ୍ପକାର୍ଯ୍ୟମାନଙ୍କରେ ଉତ୍କୃଷ୍ଟତମ ଓ ସର୍ବୋଚ୍ଚ ସ୍ତବନୀୟ “କୁତୁବ୍ ମିନାର୍” ନାମକ ଗୋଟିଏ ବିଚିତ୍ର ସ୍ତମ୍ଭ ଦିଲ୍ଲୀ ନଗରରୁ ପାଞ୍ଚ କୋଶ ଦୂରରେ ଅବସ୍ଥିତ ଅଛି । ଏହା କୁତୁବୁଦ୍ଦୀନ୍ ନାମଧେୟ ଜୁନସ୍ତ ଋଷିଙ୍କ ସ୍ମରଣାର୍ଥେ ନିର୍ମିତ । ଏହି ମନ୍ଦିର ନିର୍ମାଣ କରିବାକୁ ଊନତ୍ରିଂଶତ ବର୍ଷ ଲାଗିଥିଲା । ମନ୍ଦିରଟି ୬୫୦ ବର୍ଷ ପୂର୍ବେ ନିର୍ମିତ ହେଲେ ସୁଦ୍ଧା ଅଦ୍ୟାପି ଦର୍ଶକଗଣଙ୍କ ନୟନାନନ୍ଦ ହୋଇଅଛି ଏବଂ ବିନାଶ ଦେବତାର କରାଳ କବଳରେ ପତିତ ନ ହୋଇ ମହମ୍ମଦୀୟମାନଙ୍କ ଶିଳ୍ପ ନୈପୁଣ୍ୟର ପରି-ଚାୟକ ହୋଇ ରହିଅଛି । ଏହାର ଉଚ୍ଚ ୧୪୨ ପାଦ; ଗର୍ଭରେ ସୋପାନମାଳାପରି ୪୯୯ ପାବଚ୍ଛ ବନ୍ଧା ହୋଇଅଛି । ପୂର୍ବକାଳରେ ଦିଲ୍ଲୀ ରାଜ୍ୟ ପରିପାଳକ ମହମ୍ମଦୀୟ ଚକ୍ରବର୍ତ୍ତୀମାନେ ଏହି ମନ୍ଦିର ଚତୁଃପାର୍ଶ୍ୱରେ ସମାଧିସ୍ଥ ହୋଇଥାଆନ୍ତି ।

Digitized by srujanika@gmail.com

ବର୍ତ୍ତମାନ ଏହି ନଗରର ନିକଟରେ ଗୋଟିଏ କ୍ଷୁଦ୍ର ଗ୍ରାମ ବସିଅଛି । ଏହି ବର୍ଣ୍ଣିତ କଥା ଚଳିବା ବେଳେ ସୁଦ୍ଧା ତନ୍ନିକଟରେ କେତେ ଗୋଟି ସମାଧି ଥିବା ଯୋଗୁଁ ଜନସାଧାରଣ ରାତ୍ର ସମୟରେ ସେହିଠାକୁ ଯିବା ବିରଳ ହୋଇଥିଲା । ଏହି ମନ୍ଦିରଶ୍ରେଣୀମାନଙ୍କର ବର୍ତ୍ତୀମ ସଙ୍କାଶେ ମଧ୍ୟେ ମଧ୍ୟେ କ୍ଷୁଦ୍ର ପ୍ରକୋଷ୍ଠମାନ ନିର୍ମିତ ହୋଇଅଛି । ଅଦ୍ଭୁତ ଅର୍ଥାତ୍ ଶିଖର ଭାଗରେ ଥିବା ପ୍ରକୋଷ୍ଠକୁ ଯାଇ ତଳକୁ ଚାହିଁଲେ ତଳଲୋକେ କ୍ଷୁଦ୍ର ଶିଶୁଙ୍କ ପରି ଦିଶନ୍ତି । ଦୂର ଦେଶାଗତ ଫକୀରମାନେ ସାଧାରଣତଃ ତହିଁରେ ବାସ କରନ୍ତି । ସେହିଦିନ ସୂର୍ଯ୍ୟାସ୍ତ ପରେ ଜଣେ ଫକୀର ତାହାଙ୍କ ଦୁଇ ଶିଷ୍ୟ ସହିତ ଉପରୋକ୍ତ ମନ୍ଦିରର ଉପରିଭାଗରୁ ଧୀରେ ଧୀରେ ତଳକୁ ଓହ୍ଲାଇ, ଶିଷ୍ୟଙ୍କ ସହିତ ଥୋକେ ରହସ୍ୟାଳାପ କରି ଦୁଇଜଣଙ୍କୁ ଭିନ୍ନ ଭିନ୍ନ ଦିଗରେ ପ୍ରେରଣ କରି ସେମାନେ ଯିବାର ଏକ ପ୍ରହର ଉତ୍ତାରୁ ସେହି ସ୍ଥାନ ତ୍ୟାଗ କରି ଦିଲ୍ଲୀନଗରର ଅଭିମୁଖେ ପ୍ରସ୍ଥାନ କଲେ । ତାହାଙ୍କ ନଖ ଦାନ୍ତ ଦେଖିଲେ ସେ ଷାଠିଏ ବର୍ଷର ବୁଢ଼ାଙ୍କ ପରି ଦିଶୁଥିଲେ । କିନ୍ତୁ ଶରୀରର ଅବସ୍ଥା ଦେଖି ତାହାଙ୍କୁ ତେତେ ବୟଃପ୍ରାପ୍ତ ବ୍ୟକ୍ତି ବୋଲି କେହି କହିବେ ନାହିଁ । ଅଙ୍ଗରଖା ଦ୍ୱାରା ନିଜ ଶରୀର ଆବୃତ କରି, ମୁଣ୍ଡରେ ପାଗ ବାନ୍ଧି, କାଠ ମାଳ ଗଳାଇ ଚଢ଼ାଇ ସେ ନଗରରେ ପ୍ରବେଶ କରି, ସାହି ସାହି ଭ୍ରମଣ କଲେ । ରହିମାନ୍ ଖାନ୍ ଚକ୍ରବର୍ତ୍ତୀଙ୍କଠାରୁ ବିଦାୟ ହୋଇ, ଗଛ ଭବନ ଛାଡ଼ି, ଦାଣ୍ଡକୁ ଆସିବା ସମୟରେ ଉପରୋକ୍ତ ଫକୀର ଚମ୍ପୁ ଶବ୍ଦ କରି ଗୀତ ଗାଇ ଗାଇ ଅତୀବ ଆନନ୍ଦରେ ସେହିଠାରେ ପହଞ୍ଚିଲେ । "ଚକ୍ରବର୍ତ୍ତୀ ମୋହ ବଶପୁରେ କି କରିବେ, ଓମାହର ଏହି କାଗଜ ପତ୍ରଗୁଡ଼ିକୁ ବିଶ୍ୱାସ କରିବେ, ନା ମୋର ପ୍ରାଣ ନେବେ" ଏହିରୂପ ଭାବ ଭାବି ଭୟାକ୍ରାନ୍ତ ହୋଇ-ଖାନ ମନଗତରେ ଯାଉଁ ଯାଉଁ ଫକୀରଙ୍କୁ ଦେଖି ସେ ତ୍ରିକାଳଜ୍ଞ ହୋଇ-ଥିବାର ବିଶ୍ୱାସ କରି, ନିଜର ଭବିଷ୍ୟତ ବିଷୟ ବୁଝିବାକୁ ଇଚ୍ଛୁକ ହୋଇ ଫକୀରଙ୍କ ନିକଟବର୍ତ୍ତୀ ହୋଇ ବିନୀତ ସ୍ୱରରେ "ସଲାମ୍ ଅଲେକମ୍" ବୋଲି ପ୍ରଣାମ କଲା । ଫକୀର ମଧ୍ୟ "ଅଲେକମ୍, ସଲାମ୍" କହି ଦଣ୍ଡାୟମାନ ହେଲେ । ତତ୍ପରେ ସେମାନେ ନିମ୍ନମତେ କଥୋପକଥନ କଲେ:—

ଖାନ୍—ଆପଣ କୁଲନ୍ଦର ଫକୀର୍ ନା ମୁଦାର୍ଷ ଫକୀର ?

Digitized by srujanika@gmail.com

ଫକୀର—ଆମ୍ଭେ ଭୁବନର ଫକୀର । ମାନ ଅମ୍ଭ ବନ୍ଧସ୍ମ ଭୁମ୍ଭକୁ ବାନ୍ଧିବ ?

ଖାନ୍—ହଜ୍ରେ ! ଆପଣ ମହାତ୍ମା; ଦେବତା ସମାନ; ଅଜ ମୋର ଗୋଟିଏ ଆପଦ ଘଟିଅଛି; ତହିଁରେ ଫଳାଫଳ କଅଣ ହେବ ଆପଣ ମୋତେ କହନ୍ତୁ ।

ଫକୀର—( ବସ୍ମିତ ବଦନରସ୍ତ ହେଲା ପରି ) ଓହୋ ! ମହମ୍ମଦ ! ହା ! ମୌଲା ଅଲି ! ମୋହଠାରେ କୃପା ରଖ । ବାବୁ, ମନେ ଯାହା ଜଣା ଅବଶ୍ୟ କହିବ । ମୋହର କଥା ସଫଳ ହେଲେ ଏକ ଶତ ଫକୀରଙ୍କୁ ଅନ୍ନ-ଦାନ ଦେଇ ପାରିବୁ ତ ?

ଖାନ୍—ତହିଁରେ କି ସନ୍ଦେହ ? ଅପଣଙ୍କ ଅଦେଶାନୁଯାୟୀ କରିବି ।

ଫକୀର—ବାବୁ ! ତୋହର ନାମ ରହମାନ୍ ନୁହେଁ କି ?

ଖାନ୍—( ଅଶ୍ଚର୍ଯ୍ୟାନ୍ୱିତ ହୋଇ ) ଅଲ୍ଲା ଯଥାର୍ଥ ।

ଫକୀର—ଦୁର୍ମାର୍ଗଗାମୀମାନେ ଚକ୍ରବର୍ତ୍ତୀଙ୍କଠାରେ ତୋହପ୍ରତି ଦୋଷାରୋପଣ କରିଅଛନ୍ତି । କିନ୍ତୁ ତୋହପ୍ରତି ମହମ୍ମଦଙ୍କ କୃପାଦୃଷ୍ଟି ଅଛି । ତୋହଠାରେ ଥିବା କାଗଜପତ୍ର ବଳରୁ ତୋହର କଥା ସିଦ୍ଧହେବ । ତୋହ ଶତ୍ରୁମାନେ ନାଶ ଯିବେ ।

ଏହିରୂପ ଶ୍ରବଣକରି ଖାନ୍ ଅତ୍ୟାଶ୍ଚର୍ଯ୍ୟହୋଇ କହିଲା, "ଆପଣ ସର୍ବଜ୍ଞ, ମୁଁ ପାପାତ୍ମାଅଟେ । ମୋହର ପାପରାଶି ଯେଉଁରୂପେ ଖଣ୍ଡିତହେବ ଓ ଯେଉଁପରି ମୋହର ଶୁଭହେବ, ସେହିପରି ମତେ ଆଶୀର୍ବାଦକରି, ପ୍ରଭୁଙ୍କଠାରେ ପ୍ରାର୍ଥନା-କର ।" ଏହାଶୁଣି ଫକୀର ସନ୍ତୁଷ୍ଟହୋଇ କହିଲେ, "ତୋଠାରେ ଅଲ୍ଲାଙ୍କ ଦୟାଅଛି । ମହମ୍ମଦପ୍ରୀ ହେବାଯୋଗୁଁ ତୋହର ପାପ ନଷ୍ଟହେବ । କାଫରମାନେ ତୋହ ହସ୍ତରେ ମୃତହେବେ । ତୋହର ଶୁଭହେବ; ଯାଅ" । ତହୁଁ ଖାନ୍ ମହାନନ୍ଦରେ ନିଜ ବସାକୁ ଚାଲିଗଲା । ଫକୀର ମଧ୍ୟ ପ୍ରସ୍ଥାନ କଲେ । ଇତମଧ୍ୟରେ ଚକ୍ରବର୍ତ୍ତୀ ଖାନ୍ ସାହେବଙ୍କୁ ଅପେକ୍ଷାକରି ବସିରହି ବନାକାର-ଣରେ ଏତେ ବିଳମ୍ବ ହେବାରୁ ଖାନଙ୍କୁ ଡକାଇବା ପାଇଁ ପାର୍ଶ୍ୱବର୍ତ୍ତୀ ସେବକଙ୍କ ପ୍ରତି କ୍ରୋଧ ପ୍ରକାଶକରି, ପ୍ରଧାନ ମନ୍ତ୍ରୀ ଜାହାନଗୀରଙ୍କୁ ଡକାଇ ପଠାଇଲେ । ମନ୍ତ୍ରୀଏ ଚକ୍ରବର୍ତ୍ତୀଙ୍କୁ ନମସ୍କାରକରି ଯୋଡ଼ହସ୍ତରେ ସମ୍ମୁଖରେ ବସ୍ତ୍ରାବୃତ

ହେଲେ । ପରେ ଚକ୍ରବର୍ତ୍ତୀଙ୍କ ସଙ୍କେତ ପାଇ ଉଚିତାସନ ଗ୍ରହଣକଲେ । ମନ୍ତ୍ରୀଙ୍କୁ ଚକ୍ରବର୍ତ୍ତୀ କହିଲେ, "ରହିମାନଖାନ୍ ଯେଉଁ କାଗଜ ପତ୍ର ଆଣିଅଛି ସେଥି ବିଷୟରେ ଉଦାରଖ କରିବାକୁ ହେବ । ଏଥିଲାଗି ତୁମ୍ଭଙ୍କୁ ଡକାଇଲୁଁ" । ଚକ୍ରବର୍ତ୍ତୀ ଓ ମନ୍ତ୍ରୀ ରହିମାନ ପାଇଁ ଅପେକ୍ଷାକରି ବସିଅଛନ୍ତି ଏମନ୍ତ ସମୟରେ ଖାନ୍ କାଗଜ ବଡ଼ାଟିଏ ହାତରେ ଧରି, ଧୀରେ ଧୀରେ ଦ୍ୱିତଳ ଉପରକୁ ଉଠି, ତୃତୀୟ ମହଲରେ ଚକ୍ରବର୍ତ୍ତୀଙ୍କ ପ୍ରକୋଷ୍ଠରେ ପ୍ରବେଶକରି ଅତି କୋମଳ ସ୍ୱରରେ ଚକ୍ରବର୍ତ୍ତୀଙ୍କୁ ସ୍ତବକଲା । ପରେ ଚକ୍ରବର୍ତ୍ତୀ ତାହାକୁ ଉଚିତ ଆସନଦେଇ, ତାହାହାତରୁ କାଗଜ ବଡ଼ାଟି ନେଇ ଫିଟାଇ ଦେଖିଲେ, ମହାରାଷ୍ଟ୍ର ଭାଷାରେ ଲେଖାହେବା ଗୁଡ଼ ପାଞ୍ଚଟାକି ପତ୍ର ତହିଁରେ ଅଛି । ସେଠାରେ ମହାରାଷ୍ଟ୍ର ଭାଷା ଜାଣିବା ଲୋକ କେହି ନଥିବାରୁ ଅତ୍ୟନ୍ତ ରାଜଭକ୍ତ ଓ ମହୋପାଧ୍ୟାୟ ପଣ୍ଡିତ ବସନ୍ତଭଟ୍ଟ ନାମକ ମହାରାଷ୍ଟ୍ରୀୟ ବ୍ରାହ୍ମଣଙ୍କୁ ଡକାଇଲେ । ଅର୍ଦ୍ଧରାତ୍ର ସମୟରେ ତାଙ୍କର ଆସିବାକୁ ଅତ୍ୟନ୍ତ ଭୀତହୋଇ, ଚପଳ ସ୍ୱଭାବାପନ୍ନ ଚକ୍ରବର୍ତ୍ତୀଙ୍କ ଅପଦ ଘଟାଇବେ ବୋଲି ଶଙ୍କିତହୋଇ ଏବଂ ଏହି ଅପଦରୁ ଉଦ୍ଧାର ହେଲେ ଦେବୀଙ୍କୁ ବଳିପୂଜା ଦେବାକୁ କହି, ବସନ୍ତଭଟ୍ଟ ଗୃହରୁ ବାହାର ହେଲା । ଭଟ୍ଟଙ୍କୁ ଦେଖି ଚକ୍ରବର୍ତ୍ତୀ ବସିବାକୁ କହି ଉପସ୍ଥିତ ପତ୍ରଗୁଡ଼ିକ ପାଠକରିବାକୁ କହିଲେ । ବସନ୍ତ ଭଟ୍ଟ ସେସବୁ ଆମୂଳ ପାଠକରି, ତହିଁରୁ ବହୁତୋଟି ସାମାନ୍ୟ ଚିଠି ଗୋଟିଏ ମାତ୍ର ପ୍ରଧାନ ପତ୍ରବୋଲି ଜଣାଇ ସମସ୍ତଙ୍କୁ ପଢ଼ି ଶୁଣାଇଲେ ।

"ଶ୍ରୀ ସୂର୍ଯ୍ୟକୁଳ ପ୍ରଦୀପ ଭୀମସିଂହ ମହାରାଜାଙ୍କୁ, ଦେବଗିରି ରାଜା ରାମଦେବ ନମସ୍କାର ପୂର୍ବକ ଲେଖିବାର କାରଣ ଏହିକି, ଇତିମଧ୍ୟରେ ଆପଣ ଦିଲ୍ଲୀର ଅଲାଉଦ୍ଦୀନ ମଧ୍ୟରେ ମନାନ୍ତର ଘଟିଥିବା ଏବଂ ଚିତୋର ରାଜ୍ୟପ୍ରତି ଦଣ୍ଡଯାତ୍ରା କରିବାକୁ ଅଲାଉଦ୍ଦୀନ ପ୍ରତିଜ୍ଞାବଦ୍ଧ ହୋଇଥିବା ବିଷୟ ଆମ୍ଭେ ଶ୍ରବଣ କରିଅଛୁଁ । ଏହିକଥା ଯଥାର୍ଥ ହୋଇଥିବାରୁ ଆମ୍ଭେ ବିଶେଷ ଭାବିତଅଛୁଁ । ଇତିପୂର୍ବେ ସେ ଦକ୍ଷିଣ ଦେଶକୁ ଆସି ଆମ୍ଭଙ୍କୁ ପରାଜୟ କରିଥିବାର ଆପଣ ଶୁଣିଥିବେ । ଆମ୍ଭେମାନେ ନିଃସ୍ୱ ଏବଂ ସବୁ ପ୍ରକାରେ ଅପଦସ୍ଥ । ଆମ୍ଭେ ଐକ୍ୟ

Digitized by srujanika@gmail.com

ଯବେ ଯୁଦ୍ଧ କଲେ ଦୁଷ୍କର୍ମୀ ଚକ୍ରବର୍ତ୍ତୀକୁ ଅବଶ୍ୟ ପରାଜୟ କରି ପାରିବା । ଆପଣ ପୌରୁଷବନ୍ତ ଓ ଦେଶାଭିମାନୀ ଅଟନ୍ତି । ଆମ୍ଭେ ଆପଣଙ୍କ ସାହାଯ୍ୟ କଲେ ଭଗବାନଙ୍କ ଯଦରୁ ମ୍ଳେଚ୍ଛମାନେ ନିଶ୍ଚୟ ଦିଲ୍ଲୀରୁ ଅନ୍ତର୍ହିତ ହେବେ । ମ୍ଳେଚ୍ଛ ଚକ୍ରବର୍ତ୍ତୀ ଦୁଷ୍କର୍ମୀ ହେବାରୁ ସ୍ୱଦଳ ମଧ୍ୟରେ ତାହାଙ୍କର ଅନେକ ବି-ରୋଧୀ ଅଛନ୍ତି ବୋଲି ଆମ୍ଭେ ଶୁଣିପାରିଅଛୁଁ । ପ୍ରଥମେ ଆପଣଙ୍କ ରାଜ୍ୟପ୍ରତି ସେ-ଯୁଦ୍ଧ ଯାତ୍ରା କଲେ ଆମ୍ଭର ସମସ୍ତ ସୈନ୍ୟ ଆପଣଙ୍କ ସାହାଯ୍ୟ କରିବାକୁ ପଠାଇବୁଁ । ମାତ୍ର ଯଦି ସେ ପ୍ରଥମେ ଆମ୍ଭ ଦେଶପ୍ରତି ଆକ୍ରମଣକରେ ତେବେ ଆପଣ ଆମ୍ଭଙ୍କୁ ସାହାଯ୍ୟ ପ୍ରଦାନ କରିବେ । ଶୀଘ୍ର ବିଶାରଦ ଏହି ଯୋଗୀ ଆମ୍ଭମାନଙ୍କ ଉତ୍ତର ପ୍ରତ୍ୟୁତ୍ତର ଆନୟନ କରିବେ । ଏଥିର ପ୍ରତ୍ୟୁତ୍ତର ଶୀଘ୍ର ପଠାଇବାକୁ ବିଶେଷ ଅନୁରୋଧ-ଶ୍ରୀଶ୍ରୀରାମଦେବ" । ଏହି ପତ୍ରର ବିଷୟ ଉତ୍ତମରୂପେ ପାର୍ଶ୍ୱ ଭାଷାରେ ଭାଷାନ୍ତର କରି ଚକ୍ରବର୍ତ୍ତୀଙ୍କୁ ଶୁଣାଇ ବଙ୍କୀ ଉଠି ଭିନ୍ନ ହେଲେ । ଚକ୍ରବର୍ତ୍ତୀଙ୍କ ମନରେ କ୍ରୋଧ ଓ ବିସ୍ମୟ ଜାତହେଲା । ଉତ୍ତର ହିନ୍ଦୁସ୍ଥାନର ଉନ୍ନତ ରାଜ୍ୟ ଚିତୋର ଓ ଦକ୍ଷିଣ ହିନ୍ଦୁସ୍ଥାନର ଉନ୍ନତ ରାଜ୍ୟ ଦେବଗିରି ପର-ସ୍ପର ସାହାଯ୍ୟ କରିବା ହେତୁ ସେମାନଙ୍କୁ ପରାଜୟ କରିବା କଷ୍ଟସାଧ୍ୟ ମଣି ଚକ୍ର-ବର୍ତ୍ତୀ କର୍ତ୍ତବ୍ୟ ବିବେଚନା କରୁଁ କରୁଁ ଏହି ପତ୍ର ଗୁପ୍ତଙ୍କ ହୋଟେ କେଉଁ ପରି ମିଳିଲା ବୋଲି ଖାନ୍ ସାହେବଙ୍କୁ ପଚାରିଲେ । ଖାନ୍ ଜିଙ୍କର କପୋଳ କଳ୍ପିତ ଉତ୍ତର ଦେବା ପୂର୍ବେ, ମନ୍ତ୍ରୀ ଜଣାଇଲେ, " ପ୍ରଭୁ, ଏହି ପତ୍ରରୁ ଜଣାଯାଏ ଯେ ରାଜପୁତ୍ର ମାନେ ମହାରାଷ୍ଟ୍ରୀପୁତ୍ରଟିକୁ କିଛି ଉତ୍ତର ଦେଇନାହାନ୍ତି । ମହାରାଷ୍ଟ୍ରୀ-ଙ୍କ ପ୍ରଥମ ପତ୍ର ଆମ୍ଭ କରଗତ ହୋଇଅଛି । ଏହି ବିଷୟ ଭୀମ ସିଂହଙ୍କୁ କିଛି ଜଣାନାହିଁ " ଚକ୍ରବର୍ତ୍ତୀ ମନ୍ତ୍ରୀଙ୍କ କଥାରେ ବିଶ୍ୱାସ କରି, ଆପଣ କହିବାର ଯଥାର୍ଥ ବୋଲି ମୁଣ୍ଡ ହଲାଇ, ପୁନର୍ବ ଖାନଙ୍କୁ ଉକ୍ତ ବିଷୟରେ ପ୍ରଶ୍ନ କଲେ । ଖାନ୍ ଯୋଡ଼ ହସ୍ତରେ ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ "ମହାପ୍ରଭୁ ମଦନ ସିଂହଙ୍କ ଠାରେ ଆପଣଙ୍କର ଯେଉଁ ଉତ୍ତମାଭିପ୍ରାୟ ଅଛି ତାହା ଦୂରୀ-ଭୂତ କରିବାକୁ ମୁଁ ଅନିଚ୍ଛୁକ, କିନ୍ତୁ ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟକରି ଆମ୍ଭ ଦେଶ ଓ ଶ୍ରୀ ସ୍ୱାମୀଙ୍କର ଶ୍ରେୟୋସାଧନ କରିବା ଲାଗି ମୁଁ ନାନାବିଧ ଉପାୟ କରୁଅଛି । ଅତଏବ ଯଥାର୍ଥ କଥା ନକହି ରହି ପାରିବି ନାହିଁ" । ଏହି

Digitized by srujanika@gmail.com

କଥା ଶୁଣି ଚକ୍ରବର୍ତ୍ତୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ "ମଦନସିଂହଙ୍କ କଥା କାହିଁକି କହୁଅଛୁ ? ସେବିଷୟ ତାହାଙ୍କୁ ଜଣା କି ? ଶୀଘ୍ର ପ୍ରକାଶ କର" ବୋଲି ଆଜ୍ଞାକରନ୍ତେ ଖାନ୍ ନମ୍ର ମତେ କହିଲା "ଏହି ପତ୍ରଗୁଡ଼ାକ ମୁଁ ମଦନ ସିଂହଙ୍କ ଠାରୁ ପ୍ରାପ୍ତ ହେଲି । ଏସବୁ ତାହାଙ୍କ ପାଖରେ ଥିବାର ଶୁଣି ସେବକଙ୍କୁ ପଠାଇ ବଳପୂର୍ବକ ତାହାଙ୍କ ଠାରୁ ଅଣାଇଲି । କେବଳ ରାଜ ଭକ୍ତିରେ ମୁଁ ଏହି କାର୍ଯ୍ୟ କରି ଅଛି । କିନ୍ତୁ ଦୁର୍ମାର୍ଗଗାମୀମାନେ ମୁଁ ପଥିକଧନ ଲୁଣ୍ଠନ କରି ଓ ନର-ହତ୍ୟାଦି ଦୁଷ୍କାର୍ଯ୍ୟ ଦ୍ୱାରା ଏସବୁ ପ୍ରାପ୍ତ ହେଲି ବୋଲି ଆପଣଙ୍କ ଠାରେ ଜଣାଇ ଶ୍ରୀମୁଖଙ୍କ କ୍ରୋଧ ଜନ୍ମାଇ ଅଛନ୍ତି । ଉକ୍ତ ମଦନସିଂହ ଓ ଯୋଗୀ ପରମ ମିତ୍ର ଅଟନ୍ତି ସେ ଯୋଗୀ କିଏ କାଳ କ୍ରମେ ଜଣାଯିବ" । ଏହା ଶୁଣି ଚକ୍ରବର୍ତ୍ତୀ କ୍ରୋଧ ସମ୍ଭାଳି ନପାରି କହିଲେ "ସେହି ଦୁଷ୍ଟଙ୍କୁ ତତ୍କ୍ଷଣେ କାହିଁକି କାରାରୁଦ୍ଧ କରାଇଲୁ ନାହିଁ ? ତୋହର ସମୟୋଚିତ ବିବେକ ନାହିଁ, ତୁ ଜଣେ ପଶୁ" ଚକ୍ରବର୍ତ୍ତୀଙ୍କ ତିରସ୍କାର ବଚନ ଶ୍ରବଣ କରି ରହିମାନ୍ କହିଲା, "ପ୍ରଭୁ ! ମଦନସିଂହକୁ ବଧ କରିବାକୁ ଶେଷରେ ଖଡ୍ଗ ଧାରଣ କରନ୍ତେ ନାଜରଜଙ୍ଗ ମୋତେ ଧରି ନିବାରଣ କଲେ" । ଏହା ଶୁଣି ଚକ୍ରବର୍ତ୍ତୀ କ୍ରୋଧ ପ୍ରଜ୍ୱଳିତ ହୋଇ ଆସନ ତ୍ୟାଗ କରି କହିଲେ, "ନାଜରଜଙ୍ଗ ନିବାରଣ କଲେ ? ସେମଧ୍ୟ ତାହାଙ୍କ ସହିତ ମିଶିଅଛନ୍ତି କି ?" ଖାନ ଧୀରଭାବେ ଉତ୍ତର ଦେଲା, "ପ୍ରଭୁ ! କ୍ଷମା କଲେ ସବିଶେଷରେ ସକଳକଥା ଜଣାଇବି । ମଦନ-ସିଂହ ଓ ନାଜରଜଙ୍ଗ ପରମମିତ୍ର ଅଟନ୍ତି । ଯଦିଚ ଏହି କୃତ୍ରିମ କାର୍ଯ୍ୟକଳା-ପରେ ତାଙ୍କର ମତ ନଥାନ୍ତା ତେବେ ରାଜାପାସ୍ତ ଲୋକସହିତ କାହିଁକି ସେ ପ୍ରୀତି କରନ୍ତେ ? ଏଥିର ନିଦର୍ଶନ ବର୍ତ୍ତମାନ ପଠିତ ପତ୍ରରେ ସ୍ପଷ୍ଟ ଲେଖାଅଛି । ଆମ୍ଭ ସୈନ୍ୟ ମଧ୍ୟରେ କେତେକଜଣ ବିଦ୍ରୋହୀ ଅଛନ୍ତି ବୋଲି ତହିଁରେ ଲେଖା-ନାହିଁକି ? ନାଜରଜଙ୍ଗ ପ୍ରମୁଖ କତିପୟ ବ୍ୟକ୍ତିଙ୍କ ହେତୁ ତଦ୍ରୂପ ଲିଖିତ ହୋଇଅଛି ।" ଏହିରୂପ କହି ସାଲାମ୍ କରି ଖାନ ଉପବେଶନ କରନ୍ତେ ଚକ୍ରବର୍ତ୍ତୀ ବସନ୍ତ ଭଟ୍ଟ ଓ ମନ୍ତ୍ରୀଙ୍କୁ ଅନାଇ ନାଜରଜଙ୍ଗଙ୍କ ବିଷୟରେ ସେମାନଙ୍କ ମତ ପଚାରନ୍ତେ ମନ୍ତ୍ରୀ ଉତ୍ତର ଦେଲେ, "ଏହି ବିଷୟରେ ନାଜରଜଙ୍ଗ କି କହିବେ ତାହା ଶ୍ରବଣ କରି କର୍ତ୍ତବ୍ୟ ସ୍ଥିର କରିବା ଶ୍ରେୟସ୍କର" । କିନ୍ତୁ ଚକ୍ର-

Digitized by srujanika@gmail.com

ବର୍ତ୍ତୀ ଆଜ୍ଞା କଲେ ଯେ "ଏଥିବିଷୟରେ ନାଗରବାସୀଙ୍କଠାରୁ ଅଧିକ ଶୁଣିବା ଅନାବଶ୍ୟକ । ଲକ୍ଷିତ ନିଦର୍ଶନ ଅନୁସାରେ ଏଥିରେ ଅଯଥାର୍ଥ କିଛି ନାହିଁ" । ଏହି ଆଜ୍ଞା ଶ୍ରବଣକରି ନାଗରବାସୀ ଓ ମଦନ ସିଂହ ଅମାତ୍ୟ ତାହାଙ୍କ ଦ୍ୱାରା କଣ୍ଟିତ ମାପ୍ରାନ୍ତରାଳରେ ପଡ଼ିବେ ବୋଲି ନିଶ୍ଚୟକରି ଶୋକ ଅତି ସନ୍ତପ୍ତ ହେଲେ । ଏଣେ ଚକ୍ରବର୍ତ୍ତୀ ଗଡ଼ସ୍ଥାନ ପ୍ରତି ଯୁଦ୍ଧଯାତ୍ରା କର୍ତ୍ତବ୍ୟ କି ନା ମନେ ମନେ ଚିନ୍ତାକରି, ଖାନସାହେବଙ୍କୁ କହିଲେ, "ଦେଖ, ଆମ୍ଭେ ଯୁଦ୍ଧଯାତ୍ରା କରନ୍ତୁ-ନାହିଁ ବୋଲି ମଦନ ସିଂହଙ୍କୁ କହିଥିଲୁଁ ବର୍ତ୍ତମାନ ଉଦ୍ୟମ କରିବା ଉଚି-ତକି ? ଏଥି ବିଷୟରେ ତୁମ୍ଭର ଅଭିପ୍ରାୟ କଅଣ" । ସେ କହିଲା, "ମହା-ପ୍ରଭୁ ! ଗଡ଼ସ୍ଥାନ ଦଣ୍ଡଯାତ୍ରା ତଦାପି ତ୍ୟାଗ କରିବାକୁ ହେବନାହିଁ । ଗଡ଼ପତି-ମାନଙ୍କ ବାହ୍ୟାଡମ୍ବର ଅଧିକ । ମାତ୍ର ପ୍ରକୃତରେ ସେମାନେ ଭୀରୁପୁରୁଷ ଅଟନ୍ତି । ଦିଲ୍ଲୀର ରାଜ୍ୟ ଜୟ ନ କଲେ ମହାରାଷ୍ଟ୍ରମାନେ ରାଜପୁତ୍ରମାନଙ୍କୁ ଜୟ କରି-ପାରିବେ ନାହିଁ ବୋଲି ଛଳନାକରି ପ୍ରଜାବର୍ଗ ଅମୃପ୍ତ ଗୌରବ ଊଣା କରିବେ ।" ଏହି କଥାଗୁଣି ଚକ୍ରବର୍ତ୍ତୀ ସ୍ୱୀକାର ପ୍ରକାଶକରି ତହିଁ ଅନୁମୋଦନ ସର୍ବ ଦରବାର ହେଲା । ସେହି ସମୟରେ ଦଣ୍ଡଯାତ୍ରା ନିଷେଧ ସମସ୍ତଙ୍କୁ ଜଣାଇବେ ବୋଲି ଆଜ୍ଞାକଲେ ଏବଂ "ରାଜ ପ୍ରେମ ହୋଇଥିବା ସମସ୍ତେ ନିଦ୍ରା କରିବାକୁ ଯାଅ" ବୋଲି କହି ଆସନ ତ୍ୟାଗ କଲେ । ଏମନ୍ତ ସମୟରେ ଖାନ୍ ଅଗ୍ରସର ହୋଇ "ମହାପ୍ରଭୁ ! ଯୁଦ୍ଧକୁ ଯିବେ ନାହିଁ ବୋଲି ଆପଣ ମଦନ ସିଂହଙ୍କୁ ଯେଉଁ ସମ୍ବାଦ ଦେଇଅଛନ୍ତି ତାହା ଆମ୍ଭର ଶ୍ରେୟସ୍କର; ଯେହେତୁ ଗଡ଼ପତିମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ନ ଥିବେ, ଆମ୍ଭେ ହଠାତ୍ ସେମାନଙ୍କୁ ଆକ୍ରମଣ କରି ସହଜରେ ପରାଜୟ କରି ପାରିବା" । ଏହି କଥା ଶୁଣି, ଚକ୍ରବର୍ତ୍ତୀ ଅଟ୍ଟହାସ କରି କହିଲେ "ସାବାସ୍ ଉତ୍ତମ ଆଲୋଚନା କଲ; ତୋପରି ବୁଦ୍ଧିମାନ୍ ଆମ୍ଭ ରାଜ୍ୟରେ ଦ୍ୱିତୀୟ ନାହିଁ ।" ପରେ ଖାନ ସାହେବଙ୍କୁ ଓ ଅନ୍ୟ ମନ୍ତ୍ରୀଙ୍କୁ ବିଶେଷ ଦୂରକୁ ଘେନି ଯାଇ ଗୁପ୍ତରେ ସେମାନଙ୍କୁ କଅଣ ବା କହି ଭିତରକୁ ଚଳନ କଲେ । ଖାନ୍ ରାତ୍ରି ବିଦାୟ ପ୍ରତ୍ୟାଗମନ କଲାବେଳେ ପୂର୍ବ କଥିତ ଗୁଲ୍‌ନାର ଫକୀର ପୁନର୍ବାର ଦେଖାଦେଇ ଖାନ୍‌କୁ ଡାକି "ମୁଁ କହିଲା ପରି ତୋହର କାର୍ଯ୍ୟ ହେଲା କି ?"

Digitized by srujanika@gmail.com

ବୋଲି ପଚାରନ୍ତେ, ସେହି ସ୍ୱପ୍ନ ଦେଖିଥିବା ସକଳ ବିଷୟ ଫକୀରଙ୍କୁ ଜଣାଇଲା । ତହିଁ ପରଦିନ ପ୍ରାତଃକାଳରେ ଚକ୍ରବର୍ତ୍ତୀ ଲୋକକୁ ଡକାଇ ଯୁଦ୍ଧ ଯାତ୍ରା ବିଷୟ କଥାବାର୍ତ୍ତା ହେଲେ । ତଦ୍ବିଷୟରେ ଚକ୍ରବର୍ତ୍ତୀଙ୍କୁ ବିଶେଷ ପ୍ରୋତ୍ସାହିତ କରିବା ଲାଗି ସେ କହିଲା, "ସର୍କାରଙ୍କଠାରେ ମୁଁ ଗୋଟିଏ ପ୍ରିୟକଥା ଜଣାଉଛି । ଚିତୋର ରାଜ୍ୟାଧିପ ଭୀମସିଂହ ମହାରାଣାଙ୍କ ଭାର୍ଯ୍ୟା ପଦ୍ମିନୀ ଜଣେ ଜଗନ୍ମୋହିନୀ, ତାହାଙ୍କ ପରି ସୁନ୍ଦରୀ ଏହି ଜଗତରେ ନାହିଁ । ଅତଏବ ମହା ଚକ୍ରବର୍ତ୍ତୀ, ସେହି ପରମସୁନ୍ଦରୀ ଆପଣଙ୍କୁ ପ୍ରାପ୍ତହେବା ବିଧେୟ । ଏହି ଦଣ୍ଡଯାତ୍ରା ଦ୍ୱାରା କେବଳ ରାଜସ୍ଥାନ ଅମ୍ଭ ସ୍ୱାଧୀନ ହେବ ଏମନ୍ତ ନୁହେଁ, ପଦ୍ମିନୀ ସୁଦ୍ଧା ଲାଭ ହେବ ।" ଏହି ସମ୍ବାଦ ପାଇ ଚକ୍ରବର୍ତ୍ତୀ ଅମିତାନନ୍ଦ ଲାଭ କରି ଫକୀରଙ୍କୁ ସାରକ ଶତକ ଅଶର୍ଫି ଖାନକୁ ପୁରସ୍କାର ଦେଇ, ଅପରାହ୍ନ ଦର୍ବାରକୁ ଆସିବାକୁ ବହି ତାହାଙ୍କୁ ହିଦାୟତ ଦେଲେ ।



## ସପ୍ତମ ଅଧ୍ୟାୟ ।



ସେହିଦିନ ରଙ୍ଗ ମହଲ ମଧ୍ୟରେ ଦର୍ବାର ହେଲା । ନାନାସ୍ଥାନରୁ ସିପାହସାଲ-ମାନେ, ଜାଗିରଦାରମାନେ ଓ ଫୌଜଦାରମାନେ ଆସି ସ୍ୱ ସ୍ୱ ଅଧିକାରାନୁସାରେ ଭେଟି ଦେଇ ଉପଯୁକ୍ତ ମର୍ଯ୍ୟାଦା ପାଇଲେ । ଦିଲ୍ଲୀ ନଗରବାସୀ ବହୁତ ପଦଧାରୀ ଭୂପତି ରାଜବଂଶୀୟ ସାମନ୍ତମାନେ ମଧ୍ୟ ସେହି ଦର୍ବାରରେ ଉପସ୍ଥିତ ଥିଲେ । ରାଜପୁତଙ୍କ ଅନ୍ୟାନ୍ୟ ସାମନ୍ତଙ୍କ ପରି ଉପଯୁକ୍ତ ଆସନରେ ଉପବେଶନ କରି-ଥିଲେ । ସଭାଗୃହ ପୂର୍ଣ୍ଣ ହେବାରୁ ଚକ୍ରବର୍ତ୍ତୀ ରାଜସ୍ଥାନ ଦଣ୍ଡଯାତ୍ରା ବିଷୟରେ ନିଜ ଅଭିପ୍ରାୟ ଜଣାଇ ସେନା ନାୟକମାନଙ୍କୁ ସୈନ୍ୟ ସଜ୍ଜିତ କରିବାକୁ ଆଜ୍ଞା

Digitized by srujanika@gmail.com

ଚ୍ଛିଲେ । ଇତଃପୂର୍ବେ ଦର୍ବାର ସମୟରେ ନାଜୁରଜଙ୍ଗଙ୍କୁ ବିଶେଷ ଗୌରବ କରି ତାହାଙ୍କ ମତ ନେଇ ସକଳ କାର୍ଯ୍ୟ କରୁଥିଲେ । କିନ୍ତୁ ଅଦ୍ୟ ତାଙ୍କ ପ୍ରତି ଦୃଷ୍ଟି ନିକ୍ଷେପ ନକରି, ଦର୍ବାର ଶେଷ ହେବାରୁ ଅତ୍ୟନ୍ତ କୁପିତ ହୋଇ କହିଲେ "ହେ ସଭ୍ୟଗଣ, ଆମ୍ଭମାନଙ୍କ ମଧ୍ୟରେ ଅନେକ ରାଜଦ୍ରୋହୀ ଅଛନ୍ତି; ଆମ୍ଭ ଅନ୍ନ ଖାଇ ଆମ୍ଭ ଶତ୍ରୁଙ୍କ ସହିତ ମିଳି ମିଶି ଆମ୍ଭ ପ୍ରାଣ ନାଶ କରିବାକୁ ଇଚ୍ଛୁକ କେତେକ ବ୍ୟକ୍ତି ଏହି ସଭା ମଧ୍ୟରେ ବିଦ୍ୟମାନ ଅଛନ୍ତି ।" ଏହିରୂପ କହିବାରେ ସର୍ବସ୍ଥଳ ନୀରବ ହେଲା । ଉପସ୍ଥିତ ସାମନ୍ତମାନେ ପରସ୍ପର ମୁଖକୁ ଅନାଇ ରହିଲେ । ସଭାର ଏହି ସ୍ତବ୍ଧାବସ୍ଥା ପର୍ଯ୍ୟବେକ୍ଷଣ କରି ଚକ୍ରବର୍ତ୍ତୀ ସଭାକୁ ସମ୍ବୋଧନ କରି କହିଲେ "ତୁମ୍ଭେମାନେ ସମସ୍ତେ ଶଙ୍କା କର ନାହିଁ; ଆମ୍ଭ ମନରେ ଏହି ଅନୁମାନ ହଉଥିବା ବ୍ୟକ୍ତି, ଇତଃପୂର୍ବେ ଆମ୍ଭେ ଯାହାଙ୍କୁ ଆମ୍ଭର ପରମ ମିତ୍ର ବୋଲି ଭାବୁଥିଲୁଁ ସେହି ନାଜୁରଜଙ୍ଗ ଅଟନ୍ତି । ସେ ରାଜ-ପୁତଙ୍କ ସଙ୍ଗେ ମିଶି ଆମ୍ଭ ପ୍ରତି କୁଟିଳ କାର୍ଯ୍ୟ କରୁଅଛନ୍ତି । ଆମ୍ଭେ ତାହାଙ୍କ ତୁଷ୍ଟି ପାଇଁ କଣ ଥିଲା ମନ୍ଦୋପକାରୀ ? ଏହା ଉପଯୁକ୍ତ ପ୍ରତ୍ୟୁପକାର ସତ୍ୟ ?" ଚକ୍ରବର୍ତ୍ତୀଙ୍କ ଏହି କଠୋର ବଚନାବଳୀ ଶ୍ରବଣ କରି ନାଜୁରଜଙ୍ଗଙ୍କ ହୃଦୟ କମ୍ପି ଉଠିଲା, ଶତ୍ରୁପକ୍ଷୀୟମାନଙ୍କ ମନ୍ଦହାସ ଫୁଟିଉଠିଲା ଏବଂ ଉପସ୍ଥିତ ସାମନ୍ତମାନଙ୍କ ମନରେ ଭୟ ଓ ବିଷାଦଭାବ ଉଦୟ ହେଲା । କିଛିକାଳ ଏହି ଭାବ ସହ୍ୟ କରି ରହି, ଧୈର୍ଯ୍ୟ ଧାରଣ କରି ନାଜୁରଜଙ୍ଗ ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କହିଲେ, "ମହାପ୍ରଭୁ ! ମୋହର ଅପରାଧ କଅଣ ମୁଁ ଏ ପର୍ଯ୍ୟନ୍ତ ଜାଣି ନାହିଁ । ମୋହର ଅପରାଧ ମୋତେ ଜଣାଇ, ସାବ୍ୟସ୍ତ କରି ଏହି ମହାତ୍ମାମାନଙ୍କ ସମ୍ମୁଖରେ ଦଣ୍ଡ ଦିଆଇବା ଉଚିତ । ବିନା କାରଣରେ ଶତ୍ରୁଙ୍କର ବଚନ ଦ୍ୱାରା ମୋହର ପ୍ରାଣ ନେବା ଉଚିତ ନୁହେଁ । ମୁଁ ମହାରାଜା କଦାପି ଦେଶ ଶତ୍ରୁଙ୍କଠାରେ ସମ୍ପର୍କ ରଖି ନାହିଁ ।" ସଭ୍ୟଗଣଙ୍କ ସମ୍ମୁଖରେ ଏହିପରି ନାଜୁରଜଙ୍ଗଙ୍କ ଦର୍ପ ଏବଂ କର୍କଶ ବଚନ ଶୁଣି ଚକ୍ରବର୍ତ୍ତୀ କ୍ରୋଧରେ ଜଳିଉଠି ପରାଜିତ ହୋଇ "ତୋତେ ଅଧିକ କଥା କହିବାକୁ ହେବ ନାହିଁ; ତୋର ବିଶ୍ୱାସଘାତ ହେତୁ ତୋତେ କାର୍ଯ୍ୟଚ୍ୟୁତ କଲୁଁ । ତୁ ସେନାଧିପତି ହେବାକୁ ଅନୁପଯୁକ୍ତ; ତୋହର ପିତା ଓ ପ୍ରପିତାଙ୍କଠାରେ ଆମ୍ଭେ ରଖିଥିବା

Digitized by srujanika@gmail.com

ଧରି ଯାଅ । ତୁ ଅମୃଙ୍କୁ ବିଶେଷ ସେବା କରିଅଛୁ ଅତଏବ ତୋହର ପ୍ରାଣ ରକ୍ଷା କଲୁ ।" ପରେ ସେବକଙ୍କୁ ହାବ ତାହାକୁ ଶୀଘ୍ର କାରାରୁଦ୍ଧ କରିବାକୁ ଆଜ୍ଞା କଲେ । ସେବକମାନେ ତତ୍କ୍ଷଣେ ଆଜ୍ଞା ପାଳନ କଲେ । ସଭାସ୍ଥାନ୍ତ ଦଣ୍ଡ-ଯାତ୍ରା କଷ୍ଟପ୍ରଦ ବୋଲି ପ୍ରକାଶ କରି, ଦବାବ ଶେଷ କରି ଚକ୍ରବର୍ତ୍ତୀ ଓ ଅନ୍ୟ ସଭ୍ୟଗଣ ଯେ ଯାହା ଗୃହକୁ ପ୍ରସ୍ଥାନ କଲେ । ନାଗରଚଙ୍ଗଙ୍କ ପିତା ବିଶେଷ ଆହ୍ଲାଦିତ ହୋଇ, କୁମରକୁ ସଙ୍ଗେ ନେଇ ସେହି ସମୟ ଚକ୍ରବର୍ତ୍ତୀଙ୍କୁ ଦର୍ଶନ କରି ଯଥୋଚିତ ସତ୍କାର ପ୍ରାପ୍ତ ହୋଇ ନିଜ ପୁତ୍ର ବିଷୟରେ ପ୍ରାର୍ଥନା କରନ୍ତେ, ସୈନ୍ୟସହିତ ଅଟିବାକୁ ଚକ୍ରବର୍ତ୍ତୀ ନାଗରଚଙ୍ଗଙ୍କୁ ଅନୁମତି ଦେଲେ । ନାଗର-ଚଙ୍ଗ ଓ ତାହାଙ୍କ ପିତା ଏଥିରେ ତୁଷ୍ଟ ହୋଇ ଘରକୁ ଫେରିଗଲେ । ତହିଁ ଆରଦିନ ପ୍ରାତଃକାଳରେ ବସନ୍ତ ଦତ୍ତ କାରାଗୃହରୁ ପଳାୟନ କଲା ବୋଲି ଦିଲ୍ଲି ନଗରଯାକ ଖବର ହେଲା । ଏହିରୂପ ଘଟଣା କେବେ ଘଟି ନାହିଁ ବୋଲି ନଗରବାସୀମାନେ ନାନାମତେ ତର୍କବିତର୍କ କଲେ । କାରାଗୃହାଧ୍ୟକ୍ଷ ଭୟ ବିକ-ମ୍ପିତ ହୋଇ ଚକ୍ରବର୍ତ୍ତୀଙ୍କ ପାଦତଳେ ପଡି ଏହି ପ୍ରମାଦ ଜଣାଇ କ୍ଷମା ପ୍ରାର୍ଥନା କଲା । ଚକ୍ରବର୍ତ୍ତୀ ଅତ୍ୟନ୍ତ ବିସ୍ମୟ ପ୍ରକାଶ କରି ତାହାକୁ ଅଭୟ ଦେଇ, ବସନ୍ତ ଦତ୍ତକୁ ଧରି ଆଣିବା ଲାଗି ଏକଶତ ମୁଦ୍ରା ପୁରସ୍କାର ଘୋଷଣା କରି ଅନେକ ଲୋକଙ୍କୁ ପଠାଇଲେ ।

ତେଣେ କାରାଗୃହ ଅବରୁଦ୍ଧ ନାରାୟଣ ସିଂହଙ୍କ ଦୁଃଖ ବର୍ଣ୍ଣନାତୀତ । ଦୁଃଖାତିଶଯ୍ୟରୁ ଅନିଦ୍ରା ଏବଂ ଆପଣା ଅପେକ୍ଷା ପ୍ରେୟସୀଙ୍କ ଦୁରବସ୍ଥା ବିଷୟରେ ବିଶେଷ ଚିନ୍ତିତ ହୋଇ ବୁଦ୍ଧି ସନ୍ତପ୍ତ ହେଲେ । ଆରଦିନ ପ୍ରାତଃକାଳେ ହେମ-ଲତା କେଉଁଠାରେ ଦୃଶ୍ୟ ନହେବା ସମ୍ବାଦ ପାଇ ସେ ମୃତ୍ୟୁମୁଖରେ ପଡିଥିବାର ଅନୁମାନ କରି ଉଚ୍ଚୈଃସ୍ୱରରେ କ୍ରନ୍ଦନ କରି, ଧାଇଁବାରୁ ଅଶ୍ରୁପାତପୂର୍ବକ ଘନ ଘନ ମୂର୍ଚ୍ଛାଗଲେ । ମୁମୂର୍ଷୁ ଅବସ୍ଥାରେ "ମା ! ହେମଲତା ! ଔଷଧ ମୁଁ ଆଣି ଇତ୍ୟାଦି" ବୋଲି ବିହ୍ୱଳିତ ହୋଇ, କିଞ୍ଚିତ ନିଦ୍ରା ହେଲାବେଳେ ଦୁଃସ୍ୱପ୍ନ ଦ୍ୱାରା ଚୈତନ୍ୟ ପ୍ରାପ୍ତହୋଇ, ବିଳାପକରି, "ମା ! ହେମ ! ବାଲ୍ୟକାଳରୁ ମାତୃହୀନ ଓ ପିତୃହୀନ ହେବାରୁ ବହୁକ୍ଳେଶରେ ତୋତେ ପାଳନକରି ଏବେ ନିଷ୍କାରଣରେ ହରାଇଲି । ମା, ତୁ କେଉଁ କୂପରେ ପଡିଅଛୁ ପରା ! ଆଉ

କେବେ ମୋହର ବକ୍ଷସ୍ଥଳରେ ମୁଣ୍ଡଦେଇ ଶୋଇବୁ ନାହିଁକି ? ତଥା ଚନ୍ଦ୍ର ବୋଲି ଆଉ କିଏ ସ୍ୱରରେ ଆଳ କରିବ ? ଅହୋ ! ସେହି ବିଧ ଅମୃତ ମିଳନର ଶେଷ ସୁଖ ପର୍ବ ।" ଏହିରୂପେ ହେମଲତାର ଚେଷ୍ଟାଦି ଓ ବର୍ଣ୍ଣି ଉପାଖ୍ୟାନମାନ ସ୍ମରଣକରି ବିଳାପ କରିବାକୁ ଲାଗିଲେ । ତହିଁ ଅନନ୍ତର ମଧ୍ୟାହ୍ନରେ ମୋହନ ଶାସ୍ତ୍ରୀ ତାହାଙ୍କପାଇଁ ଭୋଜନ ସାମଗ୍ରୀ ଅର୍ପିଦେଲେ । ଏହିରୂପ ଏକ ସପ୍ତାହ ଅତିବାହିତ ହୁଅନ୍ତେ ଖାନ ସାହେବଙ୍କୁ ଦକ୍ଷିଣଯିବାକୁ ପଡ଼ିବାରୁ ତାହାଙ୍କ ସ୍ଥାନରେ ତାଙ୍କ ଅପେକ୍ଷା କୁଟିଳତର ଆଉ ଜଣେ ନିଯୁକ୍ତ ହେଲେ । ସେ ଖାନଙ୍କ ଜଣେ ସାମାନ୍ୟ କର୍ମଚାରୀ ଥିଲେ । କିନ୍ତୁ ଅଧିକାର ପ୍ରାପ୍ତ ହେବାମାତ୍ରେ ଅହଂକାର ପୂର୍ଣ୍ଣ ହୋଇ ଜନସାଧାରଣଙ୍କ ସହିତ ବାକ୍ୟାଳାପ କରିବା ମାନହାନିକର ବିବେଚନାକରି ତାଙ୍କ ସମାନ ଲୋକ କେହି ନାହିଁ ବୋଲି ଦୁରଭିପ୍ରାୟରେ ପଣ୍ଡିତ, ଖାନ ଅପେକ୍ଷା ସେ ଅଧିକ ଗୁଣବାନ ବୋଲି ଦେଖାଇ ହେବାକୁ ଯତ୍ନ କରୁଥିଲେ । ଏହି ଅଧିକାର ପାଇବା ଗୃହପ୍ରତିପାଦନ ପରେ କାରାଗୃହ ପରିଦର୍ଶନାର୍ଥେ ଯାଇ ସେଠାରେ ମୌଲବି ଓ ନାରାୟଣ ସିଂହଙ୍କୁ ଦେଖି, ତାଙ୍କପାଇଁ ଜଣେ ବ୍ରାହ୍ମଣ ଖାଦ୍ୟଦ୍ରବ୍ୟ ଅର୍ପିଦେଉଥିବାର ଜାଣି, ତାହା ନିବାରଣକରି କାରାଗୃହରେ ପ୍ରସ୍ତୁତ ଅନ୍ନ ଦେବାକୁ ଆଦେଶ କଲେ । ଏହି ଆଦେଶ ଶ୍ରବଣକରି ମୌଲବି ବିଶେଷ ଖୁସି ହେଲେ । ତହିଁ ଅନନ୍ତର ପ୍ରହରୀମାନେ ଜେଲଖାନାର ମାଣ୍ଡିରେ ଖାଦ୍ୟ ପଦାର୍ଥ ଦିଅନ୍ତେ ନାରାୟଣ ସିଂହ ଭୋଜନ ନକରି ଉପବାସରେ ରହିଲେ । ଏହି କଥା ନବୀନ ଅଧିକାରୀ ଶ୍ରବଣକରି, କାଳେ ଅନାହାରରେ ନାରାୟଣ ସିଂହଙ୍କ ପ୍ରାଣ ନଷ୍ଟହେଲେ ନିଜେ ଦୋଷୀହେବା ଆଶଙ୍କାରେ ପୂର୍ବବତ୍ ବ୍ରାହ୍ମଣଦ୍ୱାରା ଭୋଜନ ଦିଆଇଲେ । ଏହି ଅଧିକାରୀଙ୍କୁ ମହାଭିମାନୀ ବୋଲି ଜାଣି ତତ୍ରସ୍ଥ ମହମ୍ମଦୀୟମାନେ ମୌଲବିଙ୍କୁ କାରାମୁକ୍ତ କରିବାକୁ ତାହାକୁ ଅନୁରୋଧ କଲେ । ସେମାନଙ୍କ ପ୍ରୋତ୍ସାହ ଓ ସ୍ତୋତ୍ର ପାଠରେ ଫୁଲିଯାଇ ଚକ୍ରବର୍ତ୍ତୀଙ୍କ ଆଜ୍ଞା ହୋଇଅଛି ବୋଲି କହି ସେ ଦିନେ ମୌଲବିଙ୍କୁ କାରାମୁକ୍ତ କରିଦେଲେ । ସମଧର୍ମୀ ମୌଲବିଙ୍କୁ ଛାଡ଼ିଦେଇ ତାଙ୍କୁ କାରାରୁଦ୍ଧ କରି ରଖିବା ହେତୁ ନାରାୟଣ ସିଂହ କିଛି ଦୁଃଖିତ ହେଲେନାହିଁ । ମାତ୍ର ସେ ମୁକ୍ତ ହେବାପରେ ନିଜର ମୁକ୍ତି ବିଷୟରେ ସେ ଅବଶ୍ୟ ଚେଷ୍ଟା କରିବେ ବୋଲି ବିଶ୍ୱାସକରି ସିଂହ

Digitized by srujanika@gmail.com

ପରାସ୍ତ ହେଲେ । ମୌଲବି, ଭଟ୍ଟ ପ୍ରଭୃତି ଲୋକଙ୍କ ପରାମର୍ଶରୁ ତାଙ୍କୁ ଯୁଦ୍ଧ ସେ ହଠାତ୍ ସାହାଯ୍ୟ କରିବାକୁ ବାଦଶାହ ବାଜବହାଦୂର, ଭବିଷ୍ୟତରେ ଅନେକ କଷ୍ଟ ଭୋଗୁଥିଲେ ।



## ପଞ୍ଚମ ଅଧ୍ୟାୟ ।

ଉତ୍ତର ହିନ୍ଦୁସ୍ଥାନର ରାଜପୁତ୍ରମାନଙ୍କ ମଧ୍ୟରେ ରାଜସ୍ଥାନର ମହାନ ରାଜପୁତ୍ର ଅତି ପ୍ରସିଦ୍ଧ । ପରାକ୍ରମ ଓ ସତ୍କୀର୍ତ୍ତିରେ ଅଗ୍ରଗଣ୍ୟ । ମହମ୍ମଦ ଘୋରି ହିନ୍ଦୁଦେଶ ଆକ୍ରମଣରେ ଦଣ୍ଡଯାତ୍ରା କରି, ଉତ୍ତର ହିନ୍ଦୁସ୍ଥାନର ତାତ୍କାଳୀନ ରାଜା-ମାନଙ୍କୁ ପରାସ୍ତ କରିବା ଅନନ୍ତେ ସମ୍ଭ୍ରାନ୍ତ ରାଜପୁତ୍ର ଚନ୍ଦ୍ରବଂଶୀୟମାନେ ପଳାୟନ କରି ଏହି ସ୍ଥାନରେ ସ୍ୱତନ୍ତ୍ର ରାଜ୍ୟ ସ୍ଥାପନ କରିବାକୁ ଚେଷ୍ଟା କଲେ । ସେହି ନୂତନ ରାଜ୍ୟର ନାମ ରାଜସ୍ଥାନ । ସେହି ରାଜସ୍ଥାନରେ ଅନେକ ରାଜପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଚିତୋର ରାଜପୁତ୍ର ଅତିଶୟ ଶୂର ଓ ଅତ୍ୟନ୍ତ ଗୌରବାନ୍ୱିତ ହୋଇଥିଲେ । ମିବାର ରାଜ୍ୟର ଚିତୋର ପ୍ରଧାନ ନଗର । ପୂର୍ବେ ଯେ କୌଣସି ଗୁଣରେ ଚିତୋର ସମାନ ଅନ୍ୟ କୌଣସି ନଗର ନଥିଲା । ଚିତୋର ରାଜାମାନେ ରଘୁବଂଶୀୟ ଶ୍ରୀରାମଙ୍କ କନିଷ୍ଠ ପୁତ୍ର କୁଶ ମହାରାଜାଙ୍କ ବଂଶଜ ବୋଲି କଥିତ । ସୂର୍ଯ୍ୟବଂଶୀୟ ହେବାରୁ ରାଜପୁତ୍ର ଚୂଡ଼ାମଣି ବୋଲି ସବୁ ରାଜାମାନେ ତାହାଙ୍କୁ ମାନ୍ୟ କରନ୍ତି । ପରାକ୍ରମରେ, ସମ୍ମାନରେ ଓ ସଦ୍ଗୁଣରେ ଅନ୍ୟରାଜାପେକ୍ଷା ଚିତୋର ଅଧିକ ଥିବାରୁ ପୂର୍ବକାଳରୁ ତାହାକୁ ଗୌରବବାନ ଭାରତ ସମସ୍ତ ରାଜାମାନେ ତାହାଙ୍କୁ ସାର୍ବଭୌମ ବୋଲି ଜାଣି ତାହାଙ୍କ ଆଜ୍ଞାଧୀନ ଥିଲେ । ଶତ୍ରୁ କେହି ରାଜସ୍ଥାନ ପ୍ରତି ଦଣ୍ଡଯାତ୍ରା କଲେ, ଅନ୍ୟାନ୍ୟ ରାଜାମାନେ ଏକୀଭୂତ ହୋଇ ତାହାଙ୍କୁ ସାହାଯ୍ୟ କରନ୍ତି । ଏହି କଥାରମ୍ଭ ସମୟରେ ଚିତୋର

Digitized by srujanika@gmail.com

ରାଜ୍ୟର ରାଜା ଲକ୍ଷ୍ମଣ ସିଂହ ଅପ୍ରାପ୍ତ ବୟସ୍କ ଥିଲେ । ଅଳ୍ପ ବୟସରେ ତାଙ୍କ ପିତା ପରଲୋକ ଗମନ କରିଥିବାରୁ, ତାହାଙ୍କ ପିତୃବ୍ୟ ଶୂରଶିରୋମଣି ଓ ସିଂହବତ୍ ପରାକ୍ରମଶାଳୀ ଭୀମ ସିଂହ ଲକ୍ଷ୍ମଣ ସିଂହଙ୍କ ସଂରକ୍ଷଣ କର୍ତ୍ତାସ୍ୱରୂପ ରାଜ୍ୟଶାସନ କରୁଥିଲେ । ସେ ଯୁଦ୍ଧରେ ଯଦ୍ରୂପ ପରାକ୍ରମଶାଳୀ, ରାଜ୍ୟଶାସନରେ ତଦ୍ରୂପ ନିପୁଣ ଥିଲେ ଓ ରଣକ୍ଷେତ୍ରରେ ଯେଉଁରୂପ ସାହସୀ, ଦୟାପ୍ରଦାନରେ ସେହିରୂପ ଖ୍ୟାତ ଥିଲେ । ତତ୍କାଳରେ ଲକ୍ଷ୍ମଣ ସିଂହ ଚତୁର୍ଦ୍ଦଶ ବର୍ଷୀୟ ବାଳକ ହେଲେ ବୟଃପ୍ରାପ୍ତ ବ୍ୟକ୍ତିବତ୍ ବିଦ୍ୟାବାନ୍, ମତିବନ୍ତ, ଶୌର୍ଯ୍ୟଶାଳୀ ଓ ସଦ୍ଗୁଣସମ୍ପନ୍ନ ହୋଇଥିଲେ । ରାଜସ୍ଥାନ ପ୍ରତି ଦିଲ୍ଲୀ ଚକ୍ରବର୍ତ୍ତୀ ଅଲ୍ଲାଉଦ୍ଦିନ ଯୁଦ୍ଧଯାତ୍ରା କରିବେ ବୋଲି ଶ୍ରବଣ କରି ଭୀମ ସିଂହ ଚକ୍ରବର୍ତ୍ତୀଙ୍କ ନିକଟକୁ ମଦନ ସିଂହଙ୍କୁ ମଧ୍ୟବର୍ତ୍ତୀ ସ୍ୱରୂପ ପଠାଇଥିଲେ । ମଦନ ସିଂହ ଚିତୋର ସେନାଧିପତି ପ୍ରତାପ ସିଂହଙ୍କ ଜ୍ୟେଷ୍ଠ ଭ୍ରାତୃ ପୁତ୍ର ଅଟନ୍ତି । ସେ ଅଳ୍ପ ବୟସ୍କ ହେଲେ ହେଁ ବୁଦ୍ଧି ସଚ୍ଚରିତ୍ର ଶକ୍ତି ଓ ସଦ୍ଗୁଣବନ୍ତ ଯୋଗୁଁ ମହାରାଜାଙ୍କ ପ୍ରିୟପାତ୍ର ହୋଇ ରାଜକାର୍ଯ୍ୟ ବ୍ୟବହାରାଦି ଚଳାଇବାରେ ବିଶେଷ ଶ୍ରମସ୍ୱୀକାର କରୁଥିଲେ । ସେ ଚକ୍ରବର୍ତ୍ତୀଙ୍କ ନିକଟକୁ ପ୍ରେରିତ ହେବା ଓ ପାଳି ଗ୍ରାମଦେଇ ସୈନ୍ୟ ଆସିବା ଘଟଣାର ବିଷୟ ଇତିପୂର୍ବେ ବର୍ଣ୍ଣିତ ହୋଇଅଛି । ମଦନ ସିଂହ ଚକ୍ରବର୍ତ୍ତୀଙ୍କ ଦରବାରରେ ଅତି ଚମତ୍କାରରେ ନିଜ କାର୍ଯ୍ୟ ସାଧନ କରିଥିବାରୁ ଚକ୍ରବର୍ତ୍ତୀ ତାହାଙ୍କୁ ଅତ୍ୟନ୍ତ ଗୌରବ କରିଥିଲେ । ଯଦ୍ୟପି ରାଜକାର୍ଯ୍ୟ ସମ୍ବନ୍ଧେ ନିଷ୍କପଟରେ ତାହାଙ୍କ ସହିତ କଥୋପକଥନ କଲେ ନାହିଁ । ଚିତୋର ପ୍ରତି ଦଣ୍ଡ ଯାତ୍ରା କରିବା ତାହାଙ୍କ ଇଚ୍ଛା ନାହିଁ । ତଦ୍ରୂପ କରିବାର କୌଣସି କାରଣ ନାହିଁ ଏବଂ ରାଜପୁତଙ୍କ ସହିତ ଅଯତ୍ନ ସ୍ନେହ କରିବା ତାହାଙ୍କ ଅଭିଳାଷ ବୋଲି ଚକ୍ରବର୍ତ୍ତୀ ମଦନସିଂହଙ୍କୁ କହି, ତାହାଙ୍କୁ ଯଥୋଚିତ ପୁରସ୍କାର ଦେଇ ବିଦାୟ ଦେଲେ । ମଦନସିଂହ ଚିତୋରକୁ ପୁନଃପ୍ରତ୍ୟାଗତ ହୋଇ ଚକ୍ରବର୍ତ୍ତୀଙ୍କ ଉଦ୍ଦେଶ୍ୟ ଭୀମସିଂହଙ୍କୁ ସ୍ପଷ୍ଟ ରୂପେ ଜଣାଇ ଦେଲେ । ଏହି ସମ୍ବାଦ ପାଇ ମହାରାଣୀ ଓ ଅନ୍ୟାନ୍ୟ ରାଜ କର୍ମଚାରୀମାନେ ସନ୍ତୋଷ ଲାଭ ପୂର୍ବକ ମଦନ ସିଂହଙ୍କୁ ବିଶେଷ ପ୍ରଶଂସା କଲେ । ମଦନ ସିଂହ ସ୍ୱଗୃହକୁ ଯାଇଁ ମାତୃଷ୍ୱସା ସୁବର୍ଣ୍ଣବାଈଙ୍କୁ ନମସ୍କାର କରି ଆଶୀର୍ବଚନ ପ୍ରାପ୍ତ ହୋଇ, ତାହାଙ୍କ ସହିତ ନାନାମତେ କଥୋପକଥନ କଲେ ।

Digitized by srujanika@gmail.com

ଏହି ବାକ୍ୟାଳାପ ସମୟରେ ଥରେ ଥରେ ଅନ୍ୟଧ୍ୟାନ ହେବା, ଓ ସେହିଦିନ ରାତ୍ର ନିଦ୍ରା ନଯାଇ ଏଣେ ତେଣେ ଭ୍ରମଣ କରିବାର ମଦନ ସିଂହଙ୍କୁ ଦେଖି, ସେ କୌଣସି ମତେ ମୋହ ପରବଶ ହୋଇ ଥିବାର ଅନୁମାନ କରି, ସୁବର୍ଣ୍ଣବାଈ ମଦନ ସିଂହଙ୍କ ସହଗାମୀ ସେବକ ବୃଷ ସିଂହଙ୍କୁ ଉଦ୍ଦିଶ୍ୟରେ ଜିଜ୍ଞାସା କଲେ। ସେ ହେମଲତାଙ୍କ ବିଷୟ ଓ ତାହାଙ୍କ ପ୍ରତି ମଦନ ସିଂହଙ୍କ ଅନୁରାଗ ବିଷୟ ଆମୂଳ ଜଣାଇଲା। ସୁବର୍ଣ୍ଣବାଈ ସତ୍‌କୁଳୀନା ହେବା ଯୋଗୁଁ ହେମଲତା ସଦୃଶ ହୀନା କନ୍ୟାକୁ ନିଜର ବଧୂରୂପେ ଗ୍ରହଣ କରିବାକୁ ଅନିଚ୍ଛୁକ ହୋଇ ପ୍ରତାପ ସିଂହଙ୍କୁ ଏହି ବିଷୟ ଜଣାଇ ତାହାଙ୍କୁ ମଧ୍ୟ ଉଦ୍ଦିଶ୍ୟରେ ଏକମତ କରାଇଲେ। ମଦନ ସିଂହଙ୍କ ବୟସ ଦୁଇବର୍ଷ ହୋଇଥିଲା, ଏମନ୍ତ ସମୟରେ ତାଙ୍କ ପିତା ମାଧବ ସିଂହ ଘୋର ଯୁଦ୍ଧରେ ପ୍ରାଣ ହରାଇଲେ। ମଦନ ସିଂହଙ୍କ ମାତା ମୋହିନୀ ତାତ୍କାଳୀନ କୁଳାଚାରର ଅନୁସରଣ କରି ପତିର ସହଗମନ କଲେ। ସୁବର୍ଣ୍ଣବାଈ ପୁତ୍ରହୀନ ହୋଇଥିବାରୁ ମଦନସିଂହଙ୍କୁ ପୁତ୍ରବତ୍ ଯତ୍ନରେ ପ୍ରତିପାଳନ କଲେ। ଚିତୋର ମହାରାଜା ମାଧବ ସିଂହଙ୍କ କନିଷ୍ଠ ଭ୍ରାତା ପ୍ରତାପ ସିଂହଙ୍କୁ ସେନାପତିରୂପେ ନିଯୁକ୍ତ କରି ତାହାଙ୍କୁ ବିଶେଷ ଗୌରବ କଲେ। ମଦନ ସିଂହ ଶିଶୁକାଳାବଧି ସୁବର୍ଣ୍ଣବାଈଙ୍କୁ ମାତା ଓ ପ୍ରତାପ ସିଂହଙ୍କୁ ପିତା ତୁଲ୍ୟ ମଣି ନିଜ ମାତା ପିତାଙ୍କୁ ବିସ୍ମରଣ କରି ସର୍ବଗୁଣ ସମ୍ପନ୍ନ ହୋଇ ନିଜ ପିତାଙ୍କର ଓ କୁଟୁମ୍ବର ଗୌରବ ରକ୍ଷା କଲେ। ଚିତୋର ରାଜ୍ୟରେ ପହଞ୍ଚି ହେମଲତା ଓ ନାରାୟଣ ସିଂହଙ୍କୁ ବିସ୍ମରଣ ନକରି ମଦନ ସିଂହ ଦିନେ ସମସିଂହ ମହାରାଜା ଏକାକୀ ଥିବା ସମୟରେ ପାଲି ଗ୍ରାମରେ ବହୁ କଷ୍ଟରେ ନିବାସ କରୁଥିବା ବୃଦ୍ଧ ଓ ତାହାଙ୍କ ପ୍ରତିବେଶୀଙ୍କୁ ରାଜସ୍ଥାନକୁ ଅଣାଇବା ସକାଶେ ଅନେକ ପ୍ରାର୍ଥନା କଲେ। ଦୟାଶୀଳ ଭୀମ ସିଂହ ସେମାନଙ୍କ ହୀନ ଦଶା ଶ୍ରବଣ କରି ବିଶେଷ ଦୁଃଖିତ ହୋଇ ଚକ୍ରବର୍ତ୍ତୀ ଓ ତାହାଙ୍କ ମଧ୍ୟରେ ଚାଲୁଥିବା ପତ୍ର ସମାଚାର ସାଙ୍ଗ ହେଲା ଉତ୍ତାରୁ ସେମାନଙ୍କୁ ଅଣାଇବାକୁ କହି ମଦନ ସିଂହଙ୍କୁ ତୃପ୍ତ କରାଇଲେ। ହେମଲତାଠାରେ ମଦନ ସିଂହଙ୍କ ପ୍ରେମ କ୍ରମଶଃ ବୃଦ୍ଧି ହେଲା। ସେହି ବନିତା ଦୂରସ୍ଥା ହେଲେ ସୁଦ୍ଧା ସିଂହଙ୍କ ହୃଦୟ ଅଧିକାର

Digitized by srujanika@gmail.com

ଉଠିଥିଲା । ମଦନ ସିଂହ ମଦନାଗ୍ନିରେ ତାପିତହୋଇ ହିକ୍ମାଲଙ୍କ ସଦାନନ୍ଦ ଯୋଗୀଙ୍କ ସାକ୍ଷାତ କରିବା ସକାଶେ ତାହାଙ୍କ ନିବାସ ରାମଦେବ ମଠକୁ ପ୍ରସ୍ଥାନ କଲେ । ସେଠାରେ ଯୋଗୀଙ୍କୁ ଦର୍ଶନକରି ନମସ୍କାରପୂର୍ବକ ଯୋଗୀଙ୍କ ସଙ୍କେତ ଅନୁଯାୟୀ ଯଥା ଆସନରେ ଉପବେଶନ କଲେ । ସେହିଠାରେ ବସି ଯୌବନାବସ୍ଥାରେ ସେହି ଯୋଗୀ କିରୂପ ଆଶ୍ରମ ସ୍ୱୀକାର କରିଅଛନ୍ତି ବୋଲି ମନରେ ନାନାମତେ ବିତର୍କ କଲେ । ସଦାନନ୍ଦ ଯୋଗୀ ସାକ୍ଷାତ୍ ଶିବାବତାର ବୋଲି ଲୋକେ ବିଶ୍ୱାସ କରୁଥିଲେ । ମଦନ ସିଂହଙ୍କ ମୁଖ ଭଙ୍ଗିରୁ ସେ କୌଣସି କାର୍ଯ୍ୟୋପଲକ୍ଷେ ଆସିଥିବାର ଅନୁମାନ କରି "ବାବୁ ! ଏଠାକୁ କାହିଁକି ଆସିଲ" ବୋଲି ଯୋଗୀ ପ୍ରଶ୍ନ କଲେ ।

ମଦନ ସିଂହ—ପ୍ରଭୁ ! ତୁମ୍ଭ ଦର୍ଶନ ନିମିତ୍ତ ଆସିଅଛି ।

ଯୋଗୀ—ତୁମ୍ଭେ କୌଣସି ବିଷୟ ପଚାରିବାକୁ ଆସିଥିଲପରି ଜଣାଯାଏ; ଯାହାଇଚ୍ଛା ପଚାର ।

ମଦନ—ପ୍ରଭୁ ! ଦୂରଦେଶରେ ମୋହର କେତେକ ପ୍ରିୟବନ୍ଧୁ ଅଛନ୍ତି । ସେମାନେ କୁଶଳରେ ଅଛନ୍ତିତ ?

ଯୋଗୀ—ସେମାନେ ତୁରସ୍କ ନା ହିନ୍ଦୁ ଓ ସେମାନଙ୍କ ଜାତିକଅଣ ?

ମଦନ—ହିନ୍ଦୁ ଓ ରାଜପୁତ ।

ଯୋଗୀ—( କିଞ୍ଚିତ୍କାଳ ଭାବନାକରି, ଅଳ୍ପକ୍ଷଣ ଉପରକୁ ଚାହିଁ, ଝୁଲି ଖୋଲି, ତହିଁରୁ କେତେଖଣ୍ଡ ପୁସ୍ତକ ବାହାରକରି, ଗଣ୍ଡେ କାଠିରେ ସେହି ପୁସ୍ତକକୁ ତିନଥର ଛୁଁଇ, ପୁସ୍ତକ ଫିଟାଇ, ମନେ ମନେ ପାଠକରି କିଛିମତେ କହିଲେ ) ବାବୁ ! ତୁମ୍ଭର ଜିଜ୍ଞାସିତ ପ୍ରଶ୍ନର ବିଷୟ ଶ୍ରୀରାମ ଦେବଙ୍କ ପ୍ରସାଦରୁ ମୁଁ ଜାଣିପାରିଲି । ତୁମ୍ଭର ବନ୍ଧୁଙ୍କ ମଧ୍ୟରେ ଜଣେ ବୟୋବୃଦ୍ଧ, ଓ ଜଣେ ଷଷ୍ଠଦଶ ବର୍ଷୀୟା କନ୍ୟା । ଉଭୟ ବର୍ତ୍ତମାନ ଆପଦଗ୍ରସ୍ତ । କନ୍ୟାଟି ବୃଦ୍ଧଙ୍କ ନିକଟରେ ନାହିଁ । ପର ଦେଶରେ ଅଛି । ଏହିକ୍ଷଣି ସେମାନଙ୍କ କଷ୍ଟ ଦୂରହେଲପରି ଦିଶୁନାହିଁ ।"

ଯୋଗୀଙ୍କ ଉତ୍ତର ଶ୍ରବଣକରି ମଦନ ସିଂହଙ୍କ ମୁଖମ୍ଳାନ ହୋଇଗଲା । ଯୋଗୀଙ୍କଠାରୁ ବିଦାୟ ଗ୍ରହଣକରି, ଗୃହକୁ ଫେରିଯାଇ, ଅନ୍ନ ପାନାଦି ତ୍ୟାଗ

ବର ଅତ୍ୟନ୍ତ ଚନ୍ତ୍ରାଗ୍ରସ୍ତ ହେଲେ । ରାତ୍ର ଏକ ପ୍ରହର ସମୟରେ ସେ ଶଯ୍ୟାରେ ଶାୟିତ ଅଛନ୍ତି, ସେବକ କୃପ୍ତ ସିଂହ ଆସି କହିଲା "ବାବୁ ! ଆପଣଙ୍କୁ ଏବେ ଆସ-ବୋଲ ମହାରାଜ ସମ୍ବାଦ ପଠାଇ ଅଛନ୍ତି । ରାଜ ସେବକ ଦ୍ୱାରଦେଶରେ ଦଣ୍ଡାୟ-ମାନ ରହିଅଛି ।" ଏହି ସମ୍ବାଦପାଇ ମଦନ ସିଂହ ପରିଚ୍ଛଦ ପରିହିତ ହୋଇ, ମାତା ପିତାଙ୍କୁ ଜଣାଇ ଅଶ୍ୱାରୋହଣ ପୂର୍ବକ ଶିବିରାଭିମୁଖେ ଗମନ କଲେ । ଅପରିମିତ ସେବକଙ୍କ ଦ୍ୱାରା ରକ୍ଷିତ ବହୁଦ୍ୱାର ପାରହୋଇ ପରିଶେଷରେ ମୋତି ମହଲ ଦ୍ୱାର ନିକଟରେ ଅଶ୍ୱ ଉପରୁ ଅବତରଣକରି ମହାରାଜାଙ୍କ ଅବସ୍ଥାନ ମନ୍ଦିରରେ ପ୍ରବେଶକରି ରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ଭୀମ ସିଂହ ତାହାଙ୍କୁ ଦେଖି, "ବାବୁ ! ଏଠାରେ ବସ" ବୋଲି ଆସନ ଦେଖାଇ ଦେଲେ । ସେହି ମନ୍ଦିରସ୍ଥ ଉଚ୍ଚାସନରେ ଭୀମ ସିଂହ ଓ ତତ୍ପାର୍ଶ୍ୱରେ ଲକ୍ଷ୍ମଣ ସିଂହ ଉପ-ବେଶନ କରିଥିଲେ । ତାହାଙ୍କ ସମ୍ମୁଖରେ ରକ୍ତବସ୍ତ୍ର ପରିଧାନ ପୂର୍ବକ ଜଣେ ପୁରୁଷ ଗୋଟିଏ ନୂତନ ବୃତ୍ତାନ୍ତ ଜଣାଉ ଅଛି; "ତୁମ୍ଭେ ଏହା ଶ୍ରବଣକରି କର୍ତ୍ତବ୍ୟ ସ୍ଥିର-କର" ଏମନ୍ତ କହି ମହାରାଜ ଭୀମ ସିଂହ ସେହି ପୁରୁଷ ପ୍ରତି ଦୃଷ୍ଟିନିକ୍ଷେପ କଲେ । ସେହି ନବୀନ ପୁରୁଷ କହିଲା "ମହାରାଜ ! ମୁଁ ଜଣେ ମହାରାଷ୍ଟ୍ରୀୟ ବ୍ରାହ୍ମଣ । ମୋହର ନାମ ବସନ୍ତ ଭଟ୍ଟ । ମୁଁ ଏଥିପୂର୍ବେ ଦିଲ୍ଲୀଶ୍ୱରବର୍ତ୍ତୀ ଆଲ୍ଲାଉଦ୍ଦୀନଙ୍କ ଅଧୀନରେ ଥିଲି । କିନ୍ତୁ ତାହାଙ୍କ ଦୌର୍ଜନ୍ୟ ଓ ଦୁରାଚାର ସହ୍ୟ କରିନପାରି ତାହାଙ୍କ ସେବା ତ୍ୟାଗକରି ଆସିଅଛି । ଗୋବଧ କରି, ପାପୀ ଯବନଙ୍କ ନିକଟରେ ଏତେକାଳ ସେବା କରିବା ପାପ । କାଶୀବିଶ୍ୱନାଥ କେବଳ କ୍ଷମା କରିବେ । ସ୍ୱଦେଶୀୟ ଓ ବେଦ ଶାସ୍ତ୍ର ବିଶାରଦ ଯେ ଆପଣ, ତବସେବା କରିବାପାଇଁ ଆପଣଙ୍କ ପାଦତଳକୁ ଆସିଅଛି ।" ଏହି ଜଣାଣ ଶ୍ରବଣ କରି ମଦନ ସିଂହ ମହାରାଜାଙ୍କ ସମ୍ମୁଖବର୍ତ୍ତୀହୋଇ କହିଥିଲେ, "ସ୍ୱାମି ! ଏହାଙ୍କ ଚରିତ ସନ୍ଦେ-ହାସ୍ପଦ; ମହାରାଜ ଏଥିବିଷୟରେ ଉତ୍ତମରୂପେ ବିବେଚନା କରିବା ଉଚିତ ।" ଭଟ୍ଟ ସେହି ନବାଗତ ପୁରୁଷ କହିଲେ "ମହାରାଜ ! ଏହି ବାଳକର କଥାଶୁଣି ମୋହଠାରେ ଅବିଶ୍ୱାସ କରନ୍ତୁନାହିଁ । ମୁଁ ଯେଉଁ ଉପକାର କରିବାକୁ ଇଚ୍ଛା କରିଅଛି ତାହା କାଳକ୍ରମେ ଆପଣଙ୍କୁ ଜଣାଯିବ । ଆଲ୍ଲାଉଦ୍ଦୀନଙ୍କ ଅଭିବାଦ ମୋତେ ଉତ୍ତମରୂପେ ଜଣା । ଅତଏବ ଆପଣ ଯେଉଁରୂପେ ତାହାଙ୍କୁ ଅକ୍ଳେଶରେ

Digitized by srujanika@gmail.com

ପରାଜୟ କରିପାରିବେ ତହିଁର ଉପାୟ ବନ୍ଦୋବସ୍ତ କରିଦେବ ।" ଏହା ଶୁଣି, ଭୀମ ସିଂହ ଉଦାର ପୁରୁଷ ହେବାଯୋଗୁଁ ସେହି ପୁରୁଷଠାରେ କୌଣସିରୂପ ଦ୍ୱିଧା ନରଖି ମାସକୁ ଦଶଟଙ୍କା ବେତନ ଦେଇ ତାହାଙ୍କୁ କାର୍ଯ୍ୟରେ ନିଯୁକ୍ତ କଲେ । ମହାରାଷ୍ଟ୍ରୀୟ ବ୍ରାହ୍ମଣର ଚମତ୍କାର ବକ୍ତୃତାପଦରେ ବାଳକ ଲକ୍ଷ୍ମଣ ସିଂହ ସନ୍ତୋଷଲଭ ତାହାପ୍ରତି ଅନୁରାଗ ରଖିଲେ । କିନ୍ତୁ ତାହାର ଆକାର ଓ ଇଙ୍ଗିତ ନିରୀକ୍ଷଣକରି ମଦନ ସିଂହ କୌଣସି ଅନିର୍ବଚନୀୟ କାରଣରୁ ତାହାପ୍ରତି ଈର୍ଷାକଲେ । ମାତ୍ର ଚକ୍ରବର୍ତ୍ତୀଙ୍କ ଅନୁଗ୍ରହ ଥିବାରୁ ତାହାଙ୍କୁ ଗୌରବ କରିବାକୁ ବାଧ୍ୟ ହୋଇ-ଥିଲେ । ଉପରୋକ୍ତ ସମ୍ଭାଷଣ ଶେଷ ହୁଅନ୍ତେ ଚକ୍ରବର୍ତ୍ତୀ ରାଜସ୍ଥାନ ପ୍ରତି ଦଣ୍ଡ-ଯାତ୍ରା କରିବେକି ନାହିଁ ବୋଲି ମହାରାଷ୍ଟ୍ରୀୟଙ୍କୁ ପ୍ରଶ୍ନ କରାଗଲା । ବସନ୍ତ ଭଟ୍ଟ କିଞ୍ଚିତ୍ ବିଚାର କରି ଚକ୍ରବର୍ତ୍ତୀ ଯୁଦ୍ଧଯାତ୍ରା କରିବେନାହିଁ ଏବଂ ରାଜପୁତଙ୍କ ନାମ ଶ୍ରବଣରେ ଚକ୍ରବର୍ତ୍ତୀ ଭୀତ ହୁଅନ୍ତି ବୋଲି ଉତ୍ତର ଦିଅନ୍ତେ ମହାରାଜ ବିଶ୍ୱାସ କଲେ । ମଦନ ସିଂହଙ୍କୁ ଦୃଢ଼ ବିଶ୍ୱାସ ନକଲେସୁଦ୍ଧା ଅବିଶ୍ୱାସ କରି-ପାରିଲେ ନାହିଁ । ପରେ ମଦନସିଂହ ବିଦାୟ ନେଲେ । ସେହିଦିନ ଅବଧି ଲକ୍ଷ୍ମଣ ସିଂହ ଓ ବସନ୍ତ ଭଟ୍ଟ ଅତି ଆତ୍ମୀୟହେଲେ । ରାଜା ଭୀମସିଂହ ମଧ୍ୟ ଭଟ୍ଟଙ୍କ ପରାମର୍ଶ ନେଇ କେତେକ ରାଜକାର୍ଯ୍ୟ ପରିଚାଳନ କରୁଥିବାରୁ ସର୍ବସାଧାରଣ ତାଙ୍କୁ ଗୌରବ କଲେ । ଏଣେ ମଦନ ସିଂହ ତ୍ରିକାଳଜ୍ଞ ଚିଦାନନ୍ଦ ଯୋଗୀଙ୍କ ମଠକୁ ସତତ ଯାତାୟାତ କରି ଯୋଗୀଙ୍କ ସହିତ ବେଦାନ୍ତ ଓ ରାଜକୀୟ ବିଷୟରେ ଯୁକ୍ତି ପ୍ରତ୍ୟୁକ୍ତି କରନ୍ତେ ଉଭୟଙ୍କ ମଧ୍ୟରେ ଦିନକୁଦିନ ସ୍ନେହ ବୃଦ୍ଧିହେଲା । ମଦନ ସିଂହ ଯୋଗୀଙ୍କୁ ମହାରାଜାଙ୍କ ସାକ୍ଷାତ କରାଇ, ତାଙ୍କପ୍ରତି ମହାରାଜାଙ୍କ ସମୁଚିତ ଗୌରବ ଜନ୍ମାଇଲେ । ଯୋଗୀ ରାଜପୁତମାନଙ୍କୁ ଆଦର ଓ ମହମ୍ମଦୀୟ-ମାନଙ୍କୁ ହେୟଜ୍ଞାନ କରୁଥିଲେ । ଦିଲ୍ଲୀଠାରୁ ଦୈନିକ ସମ୍ବାଦ ଆଣାଇ ମଦନ-ସିଂହ ଓ ମହାରାଜାଙ୍କୁ ଜଣାଉଥିଲେ । ସେହିହେତୁ ଅନେକ ସମୟରେ ମହାରାଜା ଅର୍ଦ୍ଧରାତ୍ର ସମୟରେ ଯୋଗୀଙ୍କ ସହିତ ଗୁପ୍ତାଳାପ କରୁଥାନ୍ତି । ଏହି ମତେ ଚାରିମାସ କାଳ ଅତିବାହିତ ହେଲା ।

Digitized by srujanika@gmail.com



## ନବମ ଅଧ୍ୟାୟ ।

—:୨୦:—

ଦିନେ ରାତ୍ର ପ୍ରହରେ ସମୟରେ ମଦନ ସିଂହ ଓ ପ୍ରତାପ ସିଂହ ଏକତ୍ରବର୍ତ୍ତୀ ରାଜକାର୍ଯ୍ୟ ବିଷୟ ଆଲୋଚନା କରୁଥିଲେ । ଏମନ୍ତ ସମୟରେ, ସୁଦୀର୍ଘ ଜଟା ବିଶିଷ୍ଟ ଓ ସର୍ବାଙ୍ଗ ଭସ୍ମାବୃତ ଚିଦାନନ୍ଦ ଯୋଗୀ କୃଷ୍ଣାଜିନ ପରିଧାନ ପୂର୍ବକ ଧୀରେ ଧୀରେ ଅଗ୍ରସରହୋଇ ସେମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ବିଶେଷ ଥର ରାତ୍ର ସମୟରେ ଯୋଗୀ କେବଳ ପ୍ରତାପ ସିଂହଙ୍କ ଘରକୁ ଯାଆନ୍ତି । ଯୋଗୀଙ୍କ ଅଗମନୋଦ୍ଦେଶ୍ୟ ଜାଣିପାରି ପ୍ରତାପ ସିଂହ ଘରଭିତରକୁ ବାହାରି ଗଲେ । ମଦନ ସିଂହ ଗାତ୍ରୋତ୍ଥାନକରି "ନମୋନାରାୟଣାୟ" କହି, ବାବାଙ୍କୁ ନମସ୍କାର କରି, ତାହାଙ୍କୁ ଉଚ୍ଚାସନରେ ବସାଇ ତାହାଙ୍କର ଅଗମନର ଉଦ୍ଦେଶ୍ୟ ପଚାରିଲେ । ଯୋଗୀ କହିଲେ, "ବାବୁ ! ତୁ ରାଜଭକ୍ତ; ରାଜପୁତମାନଙ୍କର ଅଗ୍ରଗଣ୍ୟ; ରାଜକାର୍ଯ୍ୟ ସକାଶେ ପ୍ରାଣଦାନ ସୁଦ୍ଧା କରିପାରୁ; ସେହିହେତୁ ମୁଁ ତୋଠାକୁ ଅସିଅଛି । ତୋତେ କହିବା ଅନୁଚିତ ଏମନ୍ତ ଘୋର କୁହିମ କାଣ୍ଡ ଚିତୋର ନଗରରେ ଅଜ ରାତ୍ରରେ ଚଳିବାର ସ୍ଥିର ହୋଇଅଛି । ଅତଏବ ରାତ୍ର ଶେଷହେବାପର୍ଯ୍ୟନ୍ତ ତୋତେ ମୋହର ସହଗାମୀ ହେବାକୁ ପଡ଼ିବ ।" ଯୋଗୀ ଏହିରୂପ କହନ୍ତେ ମଦନ ସିଂହଙ୍କ ଶରୀର କମ୍ପମାନ ହେଲା । ଯୋଗୀ ତାହାଙ୍କ ଦେହରେ ହାତପକାଇ, ଆଶ୍ୱାସଦେଇ କହିଲେ, "ବାବୁ ! ଭୟ କରନାହିଁ । ମୁଁ ଏଠାରେ ଥିବାଯାଏ କେହିବ ଏହି ନଗର ଆପଦଗ୍ରସ୍ତ ହେବନାହିଁ । ତୁ ଅସିବାବେଳେ ଯୁଦ୍ଧ ବେଶରେ ଅସ୍ତ୍ର ଧାରଣକରି ଅସିବୁ । ରାତ୍ର ଛଅଘଡ଼ିଠାରେ ଯୋଗାନନ୍ଦ ମଠ ନିକଟରେ ମତେ ଭେଟିବୁ । "ଜୟ, କ୍ଷୀରସାଗର ଶୟନଃ" ବୋଲି ଉଚ୍ଚୈଃ ସ୍ୱରରେ କହିଲେ, ମୁଁ ତୋହର ଅଗମନ ବିଷୟ ଜାଣିପାରିବି । ମୁଁ ଅଉ କାହାରସହିତ ସମ୍ଭାଷଣ କରୁଥିବାବେଳେ ତୁ ମୋହଠାକୁ ଅସିବୁନାହିଁ । ଅଜ

Digitized by srujanika@gmail.com

ରାଜରେ ତୋହଦ୍ୱାରା ସ୍ୱରାଜ୍ୟ ଓ ସ୍ୱଦେଶ ରକ୍ଷାପାଇବେ।" ଏହିରୂପ କହି ଯୋଗୀ ପ୍ରସ୍ଥାନ କଲେ। ଯୋଗୀ ବାହାରିଯିବା ଉତ୍ତାରୁ ତାହାଙ୍କ ଉଦ୍ଦେଶ୍ୟ ଜାଣିବାକୁ ଅନେକ ତର୍କଣା କଲେ କିନ୍ତୁ କିଛି ସ୍ଥିର କରିପାରିଲେ ନାହିଁ। ପରେ ଉତରଙ୍କୁ ଯାଇ ଚଳିବା ବିଷୟସବୁ ପ୍ରତାପ ସିଂହଙ୍କୁ ଜଣା କଲେ। ସେ ପୁଣ ବିସ୍ମୟାପନ୍ନ ହୋଇ, "ବାବୁ, ବିଳମ୍ବ କରନାହିଁ, ଶୀଘ୍ର ଯାଅ; ଯୋଗୀଙ୍କ କଥାରେ ବିଶେଷ ଅର୍ଥ ଅଛି। ଅମ୍ଭ ରାଜ୍ୟପ୍ରତି ତାହାଙ୍କର ବିଶେଷ ଅଭିମାନ ଅଛି। କାରଣ ବିଶେଷରୁ ସେ ଯୋଗୀ ବେଶ ଧାରଣ କରିଅଛନ୍ତି, ମାତ୍ର ପ୍ରକୃତରେ ସେ ଯୋଗୀ ନୁହନ୍ତି ବୋଲି ମୁଁ ବିଚାର କରେ। ତୁ, ଶୀଘ୍ର ବ୍ରାହ୍ମଣ ବେଶ ଧାରଣ କରିଯାଅ।" ଏହିରୂପ ଅନେକ ପ୍ରୋତ୍ସାହ ଦେଲେ। ମଦନସିଂହ ତତ୍‌କ୍ଷଣାତ୍ ଉତରଙ୍କୁ ଯାଇ ରାଜବେଶ ତ୍ୟାଗକରି ଶରୀରରେ ବିଭୂତି ବିଲେପନ, ଓ କଟିଦେଶରେ କ୍ଷୁଦ୍ର ବସ୍ତ୍ର ପରିଧାନ, ହସ୍ତରେ ଗଡ଼ୁ ଓ ସ୍କନ୍ଧରେ ଚର୍ମାସନ ଧାରଣକରି, ପିତାଙ୍କ ନିକଟକୁ ଯାଇ ନମସ୍କାର କଲେ। ପ୍ରତାପ ସିଂହ ପୁତ୍ରକୁ ଦେଖି, "ବାବୁ! ଅବିକଳ ବ୍ରାହ୍ମଣ ପରି ଦିଶୁଅଛୁ।" ବୋଲି ହାତଦାଉରେ ଥିବା ଗୁପ୍ତ ଖଣ୍ଡାଟି ତାହାଙ୍କୁ ଦେଲେ, ଓ ରାତ୍ର ସମୟରେ ଦସ୍ୟୁଙ୍କ ସଞ୍ଚାର ସ୍ଥାନକୁ ଏକାକୀ ଯିବା ଅପଚ୍ଛନ୍ଦକ ଭାବି, ନିକଟରେ ନିଦ୍ରାଯାଇଥିବା କୃଷ୍ଣ ସିଂହଙ୍କୁ ଉଠାଇ ସାଥିରେ ଯିବାକୁ ଆଦେଶ ଦେଲେ। ଏହି ଯିବା ସମୟରେ ମଦନ ସିଂହଙ୍କୁ ଡ଼ାକି କହିଲେ "ବାବୁ! ଅତି ସାବଧାନ, ଅନେକ ଶତ୍ରୁ ଅଛନ୍ତି, ତୋତେ କୌଣସି ଆପଦ ଘଟିଲେ କୃଷ୍ଣ ସିଂହଙ୍କୁ ପଠାଇବୁ। ମୁଁ ଯଥାସାଧ୍ୟ ସାହାଯ୍ୟ ଦେବି ଅସିତ"। ସେମାନଙ୍କ ପ୍ରସ୍ଥାନାନନ୍ତର ପ୍ରତାପ ସିଂହ ସୈନ୍ୟ ଦଳର ବିଷୟ ମନେ ମନେ ଭାବନା କରି ଚିତୋର ରାଜ୍ୟ ରକ୍ଷା ବିଷୟରେ ଉଦ୍ଧାନ୍ତ ହୋଇ, ନଗର ମଧ୍ୟରେ କୃତ୍ରିମ କାଣ୍ଡ ଚଳୁଥିବାରୁ ବିଶେଷ ଦୁଃଖିତ ହୋଇ, କେବେ କେବେ "ହେ ଭଗବନ୍! ଏହି ପୁଣ୍ୟଭୂମି ଚିତୋର ରାଜ୍ୟକୁ ଆପଦରୁ ଉଦ୍ଧାର କର। ଆବଶ୍ୟକ ହେଲେ ମୋହର ପ୍ରାଣଦାନ କରିବି; ମୋହ ପୁତ୍ରଟି ନିଶ୍ଚୟପଦରେ ଫେରି ଆସୁ" ବୋଲି ଈଶ୍ୱରଙ୍କୁ ପ୍ରାର୍ଥନା କରି, ମନ ପ୍ରାଣ ମଦନ ସିଂହଙ୍କଠାରେ ରଖି, ଚିନ୍ତାବଶରୁ ନିଦ୍ରା ନହେବାରୁ ଅନେକ ଥର କପାଟ ଖୋଲି—ବାହାରକୁ ଯାଇ, ସାଙ୍ଗ ସବ ବ୍ୟସ୍ତ

ହେଲେ । ମଦନ ସିଂହ ଓ କୃଷ୍ଣ ସିଂହ ଦଶ ନିମେଷ ମଧ୍ୟରେ ଗଙ୍ଗା ଘାଟରେ ପହଞ୍ଚିଲେ । ଗଙ୍ଗାର ଶୀତଳ ପବନ କୃଷ୍ଣ ସିଂହ ଶୁଣି ନପାର ପଛରେ ପଡ଼ିଯାଏ ହୃଦୁ କଷ୍ଟି ଚୈତନ୍ୟ ପ୍ରାପ୍ତ ହେଲେ ଦଉଡ଼ି ଯାଇ ସ୍ୱାମୀଙ୍କ ସହିତ ମିଶୁଥାଏ । ରାତ୍ରି ସାଢ଼େ ବାରଟା ସମୟରେ କାଶୀ ସହରଟି ନିସ୍ତବ୍ଧ ହୋଇଥିଲା । କୃଷ୍ଣପକ୍ଷ ଯୋଗୁଁ ଘାଟଟି ଘୋର ଅନ୍ଧକାରାଚ୍ଛନ୍ନ ହୋଇଥିଲା । କିନ୍ତୁ ଆକାଶରେ ସ୍ଫାଟିକ ଖଣ୍ଡ ସଦୃଶ ତାରକା ମାନ ନକ୍ଷତ୍ରପୁଞ୍ଜଙ୍କ ଜ୍ୟୋତିରେ କିଞ୍ଚିତ୍ ଉଜ୍ଜ୍ୱଳ ଦିଶୁଥିଲା । ନଗରଟି ନିଃଶବ୍ଦ ଓ ଜନଶୂନ୍ୟ ହୋଇଥିଲା । ମାତ୍ର ସ୍ଥାନେ ସ୍ଥାନେ ଶୁଭ୍ର ଶୁକ୍ଳବସ୍ତ୍ର ପରିଧାନ କରି, ଅତର ଓ ଚନ୍ଦନାଦି ସୁଗନ୍ଧ ଦ୍ରବ୍ୟର ସୌରଭରେ ଚାରି ଦିଗ ମହକାଇ, ଅତି ମଞ୍ଜୁଳ ତାମ୍ବୁଳ ଚର୍ବଣ କରି ରସିକ ଶିଖାମଣିମାନେ ବେଶ୍ୟା ଗୃହକୁ ଯାଉଥିବାର ଦେଖାଗଲେ । କେତେକ ସ୍ଥାନରେ ଏକ ଦୁଇ ମିଠାଇ ଓ ପାନ ଦୋକାନ ଛଡ଼ା—ବଜାର ବନ୍ଦ ହୋଇ ଯାଇଥିଲା । ଧୀରେ ଧୀରେ ରାଜଘାଟ ଅତିକ୍ରମ କରି ଗୋଟିଏ ଗଳିରେ କେତେକ ଦୂର ଯାଇ ଯୋଗୀ କହିଥିବା ସଙ୍କେତ ଅନୁସରଣ କରି ସେହି ଗଳିରେ ଥିବା କ୍ଷୁଦ୍ର ମଠ ନିକଟରେ ପହଞ୍ଚି, କୃଷ୍ଣ ସିଂହଙ୍କୁ ବାହାରେ ରହିବାକୁ କହି ମଦନ ସିଂହ ମଠ ଭିତରେ ପ୍ରବେଶ କଲେ । ସେହି ସମୟରେ ଚିଦାନନ୍ଦ ଯୋଗୀ କାହା ସହିତ ମଠ ଭିତରେ ଗୁପ୍ତାଳାପ କରୁଥିବାର ଜାଣି ପାରି, ଯୋଗୀଙ୍କ ନିକଟକୁ ନଯାଇ ବାହାର ପିଣ୍ଡାରେ ବସି ମଦନ ସିଂହ ସେମାନଙ୍କ ନିମ୍ନ ସମ୍ଭାଷଣ ଶ୍ରବଣ କଲେ:—

ଚିଦାନନ୍ଦ—କରେ ଦାମୋଦର ! ଦକ୍ଷିଣର ଖବର କଅଣ ?

ଦାମୋଦର—ପ୍ରଭୁ ! ଚକ୍ରବର୍ତ୍ତୀଙ୍କ ଦଣ୍ଡ ଯାତ୍ରାର କଥା ସତ; ପ୍ରସ୍ତୁତିର ବନ୍ଦୋବସ୍ତ ଲାଗିଅଛି । ମୁରଲୀଧର ମଠଠାରେ ଅମ୍ଭ ଲୋକେ ଚଳବା ସମ୍ବାଦ ସଂଗ୍ରହ କରୁଅଛନ୍ତି ।

ଚିଦାନନ୍ଦ—ଅଚ୍ଛା, ତୁ ଯାଅ । ଅରେ ସଦାଶିବ; ଏଣେ ଆସ ।

ସଦାଶିବ—ମହାପ୍ରଭୁ ! ସେହି କନ୍ୟା ଆପଣ କହିବା ସ୍ଥାନରେ କୁଶଳରେ ଅଛି । ମୁଁ ନିଜେ ତାହା ସହିତ କଥାବାର୍ତ୍ତା କରି ଆସିଲି । ବୃଦ୍ଧ ମଧ୍ୟ ସେହିଠାରେ ଅଛନ୍ତି ।

Digitized by srujanika@gmail.com

ଚଦା—ଗଞ୍ଜାଇ ଦୋକାନଠାକୁ ଗଲକ ? ସେଠାରେ କି ବିଶେଷ ବାର୍ତ୍ତା ଶୁଣିଲ ?

ସଦା—ଓହୋ ! ସେ କଥା କହିବାକୁ ପାସୋର ଗଲି । ଗମ ଗଞ୍ଜାଇ ନିଶାରେ ଗୁପ୍ତ କଥା ସବୁ ପ୍ରକାଶ କରି ଦେଲା, ଅମ୍ଭେ ଶୁଣିବା ପରି ଅଭିଦନ ଘଟିବାର ନିଶ୍ଚୟ ।

ଚଦା—ତୁ, ଏଥର ଯାଅ । ଅରେ ଗଙ୍ଗା ! ତୁ କି ସମ୍ବାଦ ଆଣିଅଛୁ ?

ଗଙ୍ଗା—ପ୍ରଭୁ ! ମହାରାଷ୍ଟ୍ରୀୟମାନେ ମଲ୍ଲିକାପୁର ଦ୍ୱାରା ପରାଜିତ ହେଲେ । ସେମାନଙ୍କ ଉପରେ ନିର୍ଭର କରିବା ବୃଥା ବୋଲି ଅମ୍ଭ ବାବାଜିମାନେ କହୁଅଛନ୍ତି । ଗୋକୁଳ ମଠର ଗୋସାଇଁ ଏହି ପତ୍ର ଦେଇଅଛନ୍ତି (ପତ୍ରଟି ହାତକୁ ବଢ଼ାଇ ଦେଲା । )

ସେହି ପତ୍ରଟି ପାଇ ନିକଟସ୍ଥ ଲୋକଙ୍କୁ ବିଦାୟ ଦେଇ, ଦୀପ ପାଖକୁ ଯାଇ ପତ୍ର ପାଠକରି, ମନେ ମନେ କି ଭାବନା କରୁଅଛନ୍ତି ଏମନ୍ତ ସମୟରେ ମଦନ ସିଂହ "ଜୟ କ୍ଷୀର ସାଗର ଶୟନଃ" ବୋଲି ଉଚ୍ଚୈଃସ୍ୱରରେ କହିଲେ । ଏହି ଶବ୍ଦ ଶ୍ରବଣମାତ୍ରେ ଚଦାନନ୍ଦ ଆସି ମଦନ ସିଂହଙ୍କୁ ସଙ୍ଗେ ନେଇ ଭିତରକୁ ଗଲେ ଓ ଘର କବାଟ ବନ୍ଦ କରିଦେଲେ । ଏଣେ କୃଷ୍ଣ ସିଂହ ମଠ ଗାଡ଼ ମୁହଁରେ ଥିବା ବଟବୃକ୍ଷତଳେ ଗୃହରକ୍ଷଣ୍ଣିକ ଶଯ୍ୟାରେ ନିଦ୍ରାଗଲା । ଚଦାନନ୍ଦଙ୍କ ବେଶଭୂଷାଦି ସନ୍ଦର୍ଶନ କରି ବିସ୍ମୟାପନ୍ନ ହୋଇ ମଦନ ସିଂହ କହିଲେ, "ସ୍ୱାମି ! ମୋହର କର୍ତ୍ତବ୍ୟ କଅଣ ? ପ୍ରାୟ ଦୁଇପ୍ରହର ରାତ୍ର ହେଲା ।" ଯୋଗୀ ଏତଦ୍‌ବଚନ ଶ୍ରବଣ କରି, ଅଳ୍ପକ୍ଷଣ ଚିନ୍ତାକରି, ମଦନ ସିଂହଙ୍କୁ ପାଖକୁ ଡାକି କହିଲେ, "ବାବୁ ! ତୁ ଶସ୍ତ୍ର-ହସ୍ତ ହୋଇ ପ୍ରସ୍ତୁତ ଅଛୁତ ? ନାହିଁ, ତୋହର ଖଡ୍ଗ କେଉଁଠାରେ ।" ମଦନ ସିଂହ ଏହା ଶୁଣି ପଚାରିଲେ, "ମୋତେ କାହାକୁ ବଧ କରିବାକୁ ହେବ କି ? ତେବେ କାହିଁକି ? ଏହି ବିଚିତ୍ର ବେଶଧାରୀ ତୁମ୍ଭେ କିଏ ? ଶୀଘ୍ର କହ ଏଥି ବିଷୟରେ ତୃପ୍ତିକର ଉତ୍ତର ପ୍ରାପ୍ତ ହେଲେ ଆପଣଙ୍କ ଆଦେଶାନୁଯାୟୀ କାର୍ଯ୍ୟ କରିବି ।" ଏମନ୍ତ ଶୁଣି ଯୋଗୀ ତାହାଙ୍କ ଦକ୍ଷିଣ ହସ୍ତ ଧରି କହିଲେ, "ବାବୁ ! ମୋହର ସମ୍ପୂର୍ଣ୍ଣ ପରିଚୟ ବର୍ତ୍ତମାନ ଦେବାକୁ ହେବ ନାହିଁ; କିନ୍ତୁ ତୋହର ମନୋରଞ୍ଜନାର୍ଥେ କେତେକ କଥା କହିବି । ତୋହର

ରାଜ୍ୟ ରକ୍ଷା କରିବା ମୋହର ମୂଳବ୍ରତ ଅଟଇ । ଏହି ଦେଶର ନାନା ସ୍ଥାନକୁ କୃତ୍ରିମ ବେଶରେ ଲୋକଙ୍କୁ ପ୍ରେରଣ କରି ଜାଣିବା ବିଷୟ ସ୍ଥିର କରୁଅଛୁ । ମୁ ମଧ୍ୟ କ୍ଷତ୍ରୀୟ ବଂଶଜ ଅଟେ କିନ୍ତୁ କାରଣ ବିଶେଷରୁ ଏହି ଯୋଗାଶ୍ରମ ସ୍ୱୀକାର କରିଅଛୁ । ମୋହର ଆଦେଶାନୁଯାୟୀ ଏହିସବୁ ପ୍ରବର୍ତ୍ତିବା ପକ୍ଷକୁ ତୋର କୌଣସି ଆପଦ ଉପଘଟିଲେ ମୁ ପ୍ରାଣପଣେ ଚେଷ୍ଟା କରିବି" । ଏହି କଥା ଶୁଣି ମଦନସିଂହ ବିସ୍ମୟାପନ୍ନ ହୋଇ "ତୁମ୍ଭେ ରାଜପୁତ୍ର ? ତେବେ ମୁ ଅବଶ୍ୟ ଆପଣଙ୍କ ଆଜ୍ଞାନୁଯାୟୀ ଚଳିବି । ଅନେକ ରାତି ହେଲାଣି, ଚାଲ, ଆମ୍ଭ କର୍ତ୍ତବ୍ୟ ସାଧନ କରିବା ।" ପରେ ଉଭୟେ ଗାତ୍ରୋତ୍ଥାନ କଲେ । ସେହି ସମୟରେ ରାତି ଦୁଇପ୍ରହର ହୋଇଥିଲା । ନଗରବାସୀମାନେ ନିଶ୍ଚିନ୍ତରେ ନିଦ୍ରିତ ଥିଲେ ଚାରିଆଡ଼ି ଜନଶୂନ୍ୟ ଓ ନିଃଶବ୍ଦ ହୋଇଥିଲା । ଉଭୟେ ଅଗମ୍ୟ ଗଡ଼ କଡ଼ଗଳି ଚାଲିଲେ । ମଦନସିଂହ ଅଗମ୍ୟ ପ୍ରଦେଶ ଗୁଡ଼ିକ ଦେଖି, ମନେ ମନେ ଭାବନା କଲେ, "ଓହୋ ! ଏହି ସ୍ଥାନମାନଙ୍କରେ ନରହନ୍ତା ରହିଲେ ସୁଦ୍ଧା ତାହାକୁ ଜଣାଯିବା କଷ୍ଟ ସାଧ୍ୟ ।" ଏହିରୂପ ନାନା କଥା ଭାବି ଉଦ୍ବେଗ ସହିତ ପ୍ରତୀକ୍ଷା କରି କରି ସଦାନନ୍ଦ ଯୋଗୀଙ୍କ ପଶ୍ଚାଦ୍‌ଗାମୀ ହେଲେ ।



## ଦଶମ ଅଧ୍ୟାୟ



ଉପରୋକ୍ତ ନଗରର ଏକ ପ୍ରଦେଶରେ ଅତି ଭୟଙ୍କର ଜୀର୍ଣ୍ଣ ମନ୍ଦିର ଗୋଟିଏ ବିଦ୍ୟମାନ ଥିଲା । ସେହି ମନ୍ଦିରଟି ପୂର୍ବକାଳେ କୌଣସି ଏକ ଧନୀ ସମ୍ପନ୍ନ ବ୍ୟକ୍ତିଙ୍କ ନିବାସ ଗୃହ ଥିଲା । ସେହି ବ୍ୟକ୍ତି ନିଜ କନ୍ୟାଗୁଡ଼ିକୁ ବିବାହ ଦେବାରେ ବହୁବ୍ୟୟ କରି ଋଣଗ୍ରସ୍ତ ହୋଇ, ଋଣ ପରିଶୋଧନ କରି ନ ପାରି, ଗୃହତ୍ୟାଗ କରି ଦେଶାନ୍ତରକୁ ପଳାୟନ କଲେ । ତଦାବଧି ସେହି ଗୃହଟି ଭଗ୍ନା-

Digitized by srujanika@gmail.com

ବସ୍ଥାରେ ଅଛୁ । ସେହି ମନ୍ଦିରର ଅନତିଦୂରରେ ଗୋଟିଏ ଭଗ୍ନ ପ୍ରାକାର ଓ ତନ୍ମଧ୍ୟରେ ଗୋଟିଏ ପକ୍କାଘର ଥିଲା । କିନ୍ତୁ ଘରଟି ପଦାକୁ ଦୃଶ୍ୟ ହେଉ ନଥିଲା । ସେହି ଗୃହକୁ ଯାତାୟାତ ମାର୍ଗ କେହି ଜାଣିନଥିଲେ । ଉକ୍ତ ପ୍ରାକାର ନିମ୍ନ ଦେଶରେ ସ୍ଥୂଳକାୟ ପୁରୁଷ ଜଣେ ଗଳିଯାଇପାରିବା ଭଳି ଗୋଟିଏ ରନ୍ଧ୍ର ଥିଲା । ଏହି ରନ୍ଧ୍ରଦେଇ ଲୋକେ ଉକ୍ତ ଗୃହକୁ ଯାଆନ୍ତି । ଅତଏବ ଯେଉଁ ଅଳପୂର୍ବ ତାତ୍କାଳୀନ ମଠାଧିକାରୀଙ୍କ ଶରଣାଗତ ହୋଇଥିଲା । ଏହି ଗୃହର ନିକଟବର୍ତ୍ତୀ ହେବାମାତ୍ରେ ଶଙ୍କରାନନ୍ଦ ଯୋଗୀ ମଦନ ସିଂହଙ୍କୁ କହିଲେ "ବାବୁ ! ଅଜ ରାତିର କାର୍ଯ୍ୟ ଏହିଠାରେ କରିବାକୁ ହେବ । ତୁ ଏହିଠାରେ ରହି; କୌଣସି ଆପଦର ଆଶଙ୍କାହେଲେ ଏହି ରନ୍ଧ୍ରଦେଇ ଭିତରକୁ ଆସିବୁ" । ଏହା କହି ନିଜେ ରନ୍ଧ୍ରଦେଇ ଭିତରେ ପ୍ରବେଶ କଲେ । ଘର ନିକଟକୁ ଗଲା-ବେଳକୁ ତହିଁ ମଧ୍ୟରେ ଦୁଇଜଣ ମନୁଷ୍ୟ କଥୋପକଥନ କରୁଅଛନ୍ତି । ତହିଁରୁ ଜଣେ ଦୃଢ଼ ଶରୀର ବଳିଷ୍ଠ ଦକ୍ଷିଣ ହିନ୍ଦୁସ୍ଥାନ ନିବାସୀ; ଅପର ଜଣକ ଗୋଟିଏ ସୁକୁମାର ବାଳକ । ସେମାନଙ୍କ ସମ୍ଭାଷଣ ଶ୍ରବଣ କରିବା ସଙ୍କାଶେ, ଯୋଗୀ କମ୍ବଳ ଘୋଡ଼ାଇ ହୋଇ ନିଃଶବ୍ଦରେ ପିଣ୍ଡାଉପରେ ବସି ରହିଲେ ।

ବାଳକ— କହେ ! ଦୁଇ ପ୍ରହର ରାତି ହେଲାଣି । ସେମାନେ ତେବେ ଅସିଲେ ନାହିଁ କାହିଁକି ?

ବ୍ରାହ୍ମଣ— ମହାରାଜ ! ଅଜ୍ଞା; ସେମାନେ ଅବଶ୍ୟ ଆସିବେ । ଅଜ ରାତିରେ ଅମ୍ଭ ସମସ୍ତଙ୍କୁ ନିର୍ମୂଳ କରିବାକୁ ପ୍ରତିଜ୍ଞା କରିଅଛୁ । ଏବାଦ ମଦନ-ସିଂହ ତୁମ୍ଭ ରାଜକୁମାରଙ୍କର ଉପକାରୀ ବୋଲି ଛଦ୍ମବେଶ ପକାଇ ମହମ୍ମଦୀୟ ଚକ୍ରି-ବର୍ତ୍ତୀଙ୍କ ପ୍ରୀତି ସମ୍ପାଦନ କରୁଅଛୁ । ତୁମ୍ଭଙ୍କୁ ବନ୍ଧକର ତୁମ୍ଭ ଶିର ଚକ୍ରିବର୍ତ୍ତୀଙ୍କୁ ଉପହାର ସ୍ୱରୂପ ପଠାଇବାପାଇଁ ବାଗ୍‌ଦାନ କରିଅଛୁ । ସେହିହେତୁ ଦୁଷ୍ଟାତ୍ମା ମ୍ଳେଚ୍ଛ ଚକ୍ରିବର୍ତ୍ତୀ ତାହାକୁ ଏଡ଼େ ଗୌରବ କରିଅଛୁ । ସେମାନଙ୍କ ଅସିବା ସମୟ ହେଲାଣି-ଏହି ନଗର ମଧ୍ୟରେ ଚାଲୁଥିବା କୃତ୍ରିମ କାର୍ଯ୍ୟକାଣ୍ଡ ଅପଣଙ୍କୁ ଦେଖାଇବା ନିମିତ୍ତ ଏହି ଅଗମ୍ୟ ସ୍ଥାନକୁ ଅପଣଙ୍କୁ ଆଣିଅଛୁ ! ଅପଣ ଲେଶ-ମାତ୍ର ଭୟ କରିବେ ନାହିଁ । "ଏହିଟି ! ମୋହ ହସ୍ତରେ ଖଡ୍ଗ ଅଛୁ" ।

ବାଳକ— ମୋହର କିଛି ଭୟନାହିଁ । କ୍ଷତ୍ରିୟମାନେ ଭୀରୁ ନୁହନ୍ତି ।

Digitized by srujanika@gmail.com

ମୋହ ହସ୍ତରେ ଶତ୍ରୁ ଥିବାଠାରେ ଡ଼ର କାହିଁକି ? ମଦନ ସିଂହ ଆମ୍ଭ ପ୍ରତି ଏତେ ଦ୍ରୋହ କରୁଅଛନ୍ତି ବୋଲି ଆମ୍ଭେ ଜାଣିନାହୁଁ । ଆଜି ସେମାନଙ୍କୁ ଧରି ଭୀମସିଂହଙ୍କଠାରେ ସମର୍ପଣ କରିବାକୁ ହେବ ।

ବ୍ରାହ୍ମଣ— ମହାରାଜ ! ସର୍କାରଙ୍କଠାରେ ମୁଁ ଜଣାଇବା ବିଷୟ ଅପେକ୍ଷା ଅଧିକ କଥା ଏହି ରାତରେ ନିଜେ ଦେଖି ପାରିବା । ସେମାନେ ସର୍ବଦା ଏହି ସ୍ଥାନକୁ ଆସନ୍ତି । ଆଜି କାହିଁକି ବା ଏପର୍ଯ୍ୟନ୍ତ ଆସିନାହାନ୍ତି । ଗ୍ରାମ ବାହାରକୁ ଯାଇ ଆଜି କୌଣସି ମନ୍ତ୍ରଣା କରୁଥିଲେ ବୋଲି ମୁଁ ଅନୁମାନ କରୁଅଛୁ ।

ବାଲକ—ତେବେ, ଚାଲ, ଆମ୍ଭେମାନେ ଶୀଘ୍ର ସେଠାକୁ ଯିବା । ରାତ ଶେଷ ହେବା ପୂର୍ବେ କୌଣସି ରୂପେ ହେଲେ ସେହି ଦୁରାତ୍ମାମାନଙ୍କୁ ଧରିବା ।

ବ୍ରାହ୍ମଣ— ମୋହର ଜଣେ ସେବକ ଆସିବାକୁ ଅଛି । ସେ ଆସିବାକ୍ଷଣି ଆମ୍ଭେ ଯିବା । ମୁଁ ପଦାକୁ ଯାଇ ଦେଖି ଆସେ ।

ଏହିରୂପ କହି ପଦାକୁ ଯିବାକୁ ଯତ୍ନ କରିବାରୁ ଯୋଗୀ ଜାଣିପାରି ଅତିଶୀଘ୍ର ଚକ୍ର ଦେଇ ପଦାକୁ ଯାଇ, ମଦନ ସିଂହଙ୍କୁ ସାଙ୍ଗେ ନେଇ କିଞ୍ଚିତ ଦୂରକୁ ଯାଇ କହିଲେ "ବାବୁ, ବ୍ରାହ୍ମଣ ପଦାକୁ ଆସୁଅଛି-ତାହାକୁ ଦୃଶ୍ୟ ନହୋଇ ଆମ୍ଭେ କିଛିକ୍ଷଣ ଏହି କାନ୍ଥ ଉହାଡ଼ରେ ରହିବା । ସେ ଜଣେ ସେବକ ସହିତ କି କଥା କହିବ; ଆମ୍ଭେ ତାହା ଶୁଣିବା ।"

ବ୍ରାହ୍ମଣ ପଦାକୁ ଆସନ୍ତେ ତାହାର ସେବକ ଆନନ୍ଦ ଦାସ ନିକଟବର୍ତ୍ତୀ ହେଲା ।

ବ୍ରାହ୍ମଣ— ଆନନ୍ଦ ! ଖବର କଅଣ ? ସଗଡ଼ ଠିକ କଲୁଛ ?

ଆନନ୍ଦ— ଆଜ୍ଞା; ହଁ କଲି । ଆମ୍ଭ ଶଙ୍କର ଓ ସଗଡ଼ିଆ ଶସ୍ତ୍ରହସ୍ତରେ ଜାଗ୍ରତ ଅଛନ୍ତି । ତୁମ୍ଭେ ବାଳକକୁ ଧରି ଆସିବାର କେବଳ ବିଳମ୍ବ ।

ଏହିକଥା ଶ୍ରବଣକରି ବ୍ରାହ୍ମଣ ଅପରିମିତ ଆନନ୍ଦ ଲାଭକରି ଆନନ୍ଦକୁ ସଙ୍କେତ ସ୍ଥାନକୁ ପଠାଇ ସେହି ଗୁପ୍ତ ମନ୍ଦିରରେ ପୁନର୍ବି ପ୍ରବେଶ କଲା । ଲୁଚି ରହିଥିବା ଯୋଗୀ ଓ ମଦନ ସିଂହ ଉପରୋକ୍ତ ସମ୍ଭାଷଣ ଶ୍ରବଣକରି, ସେମାନଙ୍କ ପଶ୍ଚାଦ୍‌ଗାମୀ ହେବାକୁ ସ୍ଥିରକଲେ । ଯୋଗୀ ସିଂହଙ୍କୁ କହିଲେ, "ବାବୁ ! ଏହି ବ୍ରାହ୍ମଣ ଆମ୍ଭର ପରମ ଶତ୍ରୁ ଓ ସମ୍ଭାଷଣକାରୀ ବାଳକ ପରମ ବନ୍ଧୁ ଅଟନ୍ତି ।

Digitized by srujanika@gmail.com

ପ୍ରାଣପଣେ ସେହି ବାଳକକୁ ଉଦ୍ଧାରକର ଏହି ବ୍ରାହ୍ମଣକୁ ଭୂଶାୟୀ କରିବାକୁ ହେବ । "ଜୟ କାଳୀ" ବୋଲି ମୁଁ ଉଚ୍ଚାରଣ କରିବାମାତ୍ରେ, ତୁ ଏହି ଖଡ୍ଗରେ ଏହି ବ୍ରାହ୍ମଣର ଶିରଚ୍ଛେଦନ କରିବୁ । ଏହି ଗୂଢ଼ ରହସ୍ୟ ରାତ୍ର ଶେଷରେ ବୁଝିପାରିବୁ"—ଉକ୍ତ ବ୍ରାହ୍ମଣ ଭିତରକୁ ଯାଇ, ବାଳକକୁ ସଙ୍ଗେ-ନେଇ ରନ୍ଧ୍ର ଦେଇ ବାହାରକୁ ଆସିଲା । ଏବଂ ସେହି ଗ୍ରାମର ଉପକଣ୍ଠସ୍ଥ ଆମ୍ରବନ ଅଭିମୁଖେ ପ୍ରସ୍ଥାନକଲା । ଯୋଗୀ ଓ ମଦନସିଂହ ଅଦୃଶ୍ୟ ଭାବେ ସେମାନଙ୍କ ପଶ୍ଚାତ୍ ଗାମୀହେଲେ । କେତେଦୂର ଗମନ କରନ୍ତେ ନିର୍ଦ୍ଦିଷ୍ଟସ୍ଥାନ ରସାଳବନ ଦୃଷ୍ଟିଗୋଚର ହେଲା । ସେହି ଅନ୍ଧକାରମୟ ଉଦ୍ୟାନରେ ବ୍ରାହ୍ମଣ ଓ ବାଳକ ପ୍ରଥମେ ପ୍ରବେଶ କଲେ । ଏକସ୍ଥାନରେ ବାଳକକୁ ବସାଇ ବ୍ରାହ୍ମଣ ଅଳ୍ପ ଦୂର ଯାଇ ଗୁପ୍ତରେ ନିଜ ସେବକଙ୍କୁ ଅନାଇଁ କହିଲା, "ରେ ଶଙ୍କର ! ରେ ଆନନ୍ଦ ! ବନ୍ଧୁକ ଓ ଖଡ୍ଗ ଠିକରୂପେ ରଖି ଅଛତ !" ସେବକମାନେ ଉତ୍ତର ଦେଲେ "ହଜୁର ! ହଁ ରଖିଅଛୁ । ଏବାଦ୍ ଦୀକ୍ଷି ନଗରଠାରୁ ପାଣ୍ଡୁ ରଙ୍ଗନାଥ ସନ୍ନ୍ୟାସୀ ବେଶ ଧାରଣକରି କେତେ ଗୋଷ୍ଠ ପନ୍ଥ ଧରି ତୁମ୍ଭଠାକୁ ଆସିଅଛି ।" ଏହିକଥା ଶ୍ରବଣକରି ପଶ୍ଚାତ୍ ଗାମୀ ଯୋଗୀ ସନ୍ତୁଷ୍ଟ ହେଲେ । ବ୍ରାହ୍ମଣ ସେବକଙ୍କୁ କହିଲେ "ଆମ୍ଭର କର୍ତ୍ତବ୍ୟ କାର୍ଯ୍ୟ ଆଜି ସିଦ୍ଧହେଲା । ଆଉ ଉତ୍ତର ପ୍ରତ୍ୟୁତ୍-ତରେ କିଛି କାର୍ଯ୍ୟ ନାହିଁ । କାଲି ଏହିବାର୍ତ୍ତା ଶ୍ରବଣ କରି ଚଦୋର ସିଂହ ଆମ୍ଭ ପାଦତଳକୁ ଆସିବ । ଆମ୍ଭର ତାହାଠାକୁ ଯିବା ଅନାବଶ୍ୟକ । ଶୀଘ୍ର, ଶକଟରେ ଘୋଡ଼ା ବନ୍ଧାଅ ।" ତେଣେ ବାଳକଟି ଏହି ବ୍ରାହ୍ମଣର କପଟ ଚେଷ୍ଟା, ଓ ସେବକଙ୍କ ସହିତ ରହସ୍ୟାଳାପ ନିରୀକ୍ଷଣ କରି ବିପଦାପନ୍ନ ହୋଇ, ଅର୍ଦ୍ଧରାତ୍ର ସମୟରେ ଉକ୍ତ ଜନଶୂନ୍ୟ ଓ ଅନ୍ଧକାରମୟ ଉଦ୍ୟାନରେ ବ୍ରାହ୍ମଣ ତାହାକୁ ଆପଦ୍ଗ୍ରସ୍ତ କରିପାରେ ବୋଲି ଶଙ୍କାକରି, ଜଣେ ବିଦେଶୀକୁ ବିଶ୍ୱାସ କରି ଅନ୍ତଃପୁର ତ୍ୟାଗ ପୂର୍ବକ ଅକାଳରେ ଅଜ୍ଞାତ ସ୍ଥାନକୁ ଆସିଥିବାରୁ ବିଶେଷ ଚିନ୍ତିତ ହେଲେ; କିନ୍ତୁ ଧୈର୍ଯ୍ୟଶାଳୀ ହେବାଯୋଗୁଁ ବାଳକ ହେଲେ ସୁଦ୍ଧା ମନରେ ସ୍ଥୈର୍ଯ୍ୟ ତ୍ୟାଗ ନକରି ଭବିତବ୍ୟ ଘଟଣାକୁ ଅପେକ୍ଷା କରି ରହିଲେ । ଏମନ୍ତ ସମୟରେ ବ୍ରାହ୍ମଣ ବାଳକର ନିକଟବର୍ତ୍ତୀ ହୋଇ କହିଲା "ମହାପ୍ରଭୁ ! ସେହି ଦୁରାତ୍ମାମାନେ ଏହି କୋଠା ଭିତରକୁ ଆସି ଅଛନ୍ତି । ସେମାନଙ୍କ

Digitized by srujanika@gmail.com

ଧରିବାକୁ ହେବ ! ଏଣୁ ସେମାନଙ୍କ ଦ୍ୱାରା ଆପଣଙ୍କ କୌଣସି ଅନିଷ୍ଟ ନଘଟିବା-
ଲାଗି ଆପଣ ଏହି ଶକଟ ଭିତରେ ବସି ରହନ୍ତୁ ।" ଏହି କଥାଶୁଣି ବାଳକର
ସନ୍ଦେହ ଓ ଶଙ୍କା ଦ୍ୱିଗୁଣ ବୃଦ୍ଧି ହେଲା । ସେ ବଶେଷ ଚେଷ୍ଟା କରି ଅଗତ୍ୟା
ଶକଟାରୋହଣ କଲେ । ପରେ ବ୍ରାହ୍ମଣ ଆନନ୍ଦ ଓ ଶଙ୍କରକୁ ଦୂରକୁ ଡାକି
ନେଇ କହିଲା, " ତୁମ୍ଭେମାନେ ଅତି ଚଞ୍ଚଳରେ ଶକଟ ବାହି ନେବ; ପ୍ରତ୍ୟେକ
ଛଅ କୋଶଠାରେ ଘୋଡ଼ା (ଡ଼ାକ) ରଖାଅଛି; ଆମ୍ଭେମାନେ ଅତିଶୀଘ୍ର ଯାଇ-
ପାରିବା; ବାଳକ କୌଣସି ଦୌରାତ୍ମ୍ୟ ଦେଖାଇଲେ ଏହି ବନ୍ଧୁକାଦି ଶସ୍ତ୍ର ବ୍ୟବ-
ହାର କରିବ; କିନ୍ତୁ ସାଧ୍ୟମତେ ଏହାକୁ ସଜୀବରେ ଦିଲ୍ଲୀକୁ ନେବାର ଯତ୍ନ କରି-
ବାକୁ ହେବ ।" ପରେ ନିଜେ ଶକଟରେ ଆରୋହଣ କଲା । ଏମନ୍ତ ସମୟରେ
ଚିଦାନନ୍ଦ ଯୋଗୀ ନିଜ ସ୍ୱାମୀକୁ ଅପଦଗ୍ରସ୍ତ ଦେଖି, ସତର୍କ ହୋଇ, ମଦନ-
ସିଂହଙ୍କୁ ଅନାଇ କହିଲେ " ବାବୁ ! ଖବର୍ଦ୍ଦାର ! ଖବର୍ଦ୍ଦାର ! ନବୀନ ମନ୍ମଥ ସମ ସେହି
ବାଳକ ଅମ୍ଭ ସ୍ୱାମୀ, ରାଜକୁଳ ତିଳକ, ଯୁବ କୁମାର ଲକ୍ଷ୍ମଣସିଂହ ଅଟନ୍ତି । ଏହି
ଦୁର୍ମାର୍ଗଗାମୀ ବ୍ରାହ୍ମଣ ତାହାଙ୍କୁ ଅପମୃତ୍ୟୁରେ ଭସାଇ ଦେବାକୁ ଇଚ୍ଛା-
କରିଅଛି । ତୁମ୍ଭେ ସାବଧାନ ହୁଅ ।" ଅର୍ଦ୍ଧରାତ୍ର ସମୟରେ ରାଜସଦନ ତ୍ୟାଗ
କରି ପଯ୍ୟୋମୁଖ ବିଷକୁମ୍ଭବତ୍ ଜଣେ ଦୁରାତ୍ମାକୁ ବିଶ୍ୱାସକରି ରାଜପୁତ୍ର କନ୍ଧ-
ର୍ଦ୍ଦେଶକୁ ଆସି ଥିବାରୁ ବିଶେଷ ଦୁଃଖିତ ହୋଇ ଓ ତାହାଙ୍କୁ ହ ଅପଦ ଘଟିବ
ବୋଲି ଭୀତ ହୋଇ ଉଦ୍ବିଗ୍ନଚିତ୍ତରେ ଈଶ୍ୱରଙ୍କୁ ବଞ୍ଚିବାର ପ୍ରାର୍ଥନାକରି ମଦନ-
ସିଂହ ଚିନ୍ତାଗ୍ରସ୍ତ ହେଲେ । ଚିଦାନନ୍ଦ ଯୋଗୀ ଅପଲକ ନୟନରେ ଶକଟପ୍ରତି
ଚାହିଁ ରହିଲେ । ବ୍ରାହ୍ମଣ ଶକଟରେ ଆରୂଢ଼ ହେବା ମାତ୍ରେ ବାଳକ ନିର୍ଭୟରେ
ପ୍ରଶ୍ନକଲେ " ତୁ ମତେ ଏହି ନିର୍ଜ୍ଜନ ବନକୁ କି ଉଦ୍ଦେଶ୍ୟରେ ଆଣିଅଛୁ ?
କୌଣସି ଦ୍ରୋହ କରିବା ଇଚ୍ଛା କରି ଅଛୁକି ?"ଏହି ପ୍ରଶ୍ନ ଶୁଣିବାକ୍ଷଣି ବ୍ରାହ୍ମଣ
ବାଳକର ଗଳାଦେଶରେ ହସ୍ତଦେଇ କହିଲା"ମୁଁ ତୋତେ କଏଦ କରି ଦିଲ୍ଲୀନଗ-
ରକୁ ନେଉଅଛି,ତୋତେ ନେବାପାଇଁ ଅଲ୍ଲାଉଦ୍ଦୀନ ଚକ୍ରବର୍ତ୍ତୀଙ୍କ ଆଜ୍ଞା ହୋଇଅଛି ।
ଏବେ ଦେଖେ ତୁ ଆଜ ମୋହର ହସ୍ତଗତ ହେଲୁ । ତୁ ଆଉ କଣ କରି ପାରିବୁ ?
ରାଜପୁତ୍ର ବୋଲି ଅଭିମାନ ଥିଲେ ଧୈର୍ଯ୍ୟ ଦେଖାଇ ଏଥିରୁ ମୁକ୍ତ ହୁଅ ।
ପଳାଇବାକୁ ଯତ୍ନ କଲେ ନିଶ୍ଚେ ମୋହ ହସ୍ତରେ ମୃତ୍ୟୁ ଲଭିବୁ" ଏବଗୁପ୍ତ

Digitized by srujanika@gmail.com

କହି ଫକିର ବସନ୍ତ ଭଟ୍ଟ ଆଉ ହାତ ନିଜ ଟଣ୍ଟ ଅଧିକୁ ବଢାଇଲା । ଏହି ବିପତ୍ତି ସନ୍ଦର୍ଶନ କରି ଗଜପୃଷ୍ଠ ସହ୍ୟ ନ ହୋଇ କଟି ଦେଶରୁ ଖଡ୍ଗ ବାହାର କରିବା ସମୟରେ, ମଦନ ସିଂହ ନିଜ ସ୍ୱାମୀଙ୍କୁ ଆପଦ୍‌ଗ୍ରସ୍ତ ଦେଖି ତାହାଙ୍କ ପ୍ରାଣ ରକ୍ଷାକରିବା ଲାଗି ଦଉଡ଼ି ଆସି "ରକ୍ଷ ରକ୍ଷ ଦୁର୍ଗା" ବୋଲି ଉଚ୍ଚୈଃସ୍ୱରରେ ଉଦ୍ୟାନ ପ୍ରତିଧ୍ୱନିତ କରି ଶିବିରର ନିକଟବର୍ତ୍ତୀ ହୋଇ ପଦାଘାତରେ ତହିଁର କପାଟ ଭଗ୍ନ କରି, ଭିତରେ ପ୍ରବେଶ କଲେ । ବସନ୍ତ ଭଟ୍ଟ ବ୍ରାହ୍ମଣ ବେଶଧାରୀ ମଦନ ସିଂହଙ୍କୁ ଚିହ୍ନି ନପାରି ଭୟରେ କମ୍ପମାନ ହୁଅନ୍ତେ, ମଦନ ସିଂହ କ୍ରୋଧୋଦ୍ଦୀପିତ ହୋଇ ସେହି ମହାଦୁଷ୍ଟାଧମକୁ ଛଳକୁ ହିଁକି ଭୂଗାମୀ କଲେ । ଅନନ୍ତ ଦାସ ଓ ଶଙ୍କର ଚକ୍ରପାଣି ଯୋଗୀଙ୍କୁ ଦେଖି ଭୟାକ୍ରାନ୍ତ ହୋଇ, ଧୈର୍ଯ୍ୟ ତ୍ୟାଗ କରି ସଙ୍ଗଡଥା ସହିତ ପଳାୟନ କଲେ । ମଦନ ସିଂହ ପ୍ରଥମେ ବ୍ରାହ୍ମଣର ପ୍ରାଣ ରକ୍ଷା କରିବାକୁ ଇଚ୍ଛା କରିଥିଲେ । କିନ୍ତୁ ବ୍ରାହ୍ମଣ ନିଜର ଖଡ୍ଗ ମଦନ ସିଂହ ପ୍ରତି ନିକ୍ଷେପ କରନ୍ତେ ଏବଂ ଯୋଗୀ "ଜୟକାଳି" ବୋଲି ଚିତ୍କାର କରନ୍ତେ ମଦନ ସିଂହ ବ୍ରାହ୍ମଣର ଖଡ୍ଗାଘାତ ନିବାରଣ କରି ନିଜ ଖଡ୍ଗରେ ତାହାକୁ ପ୍ରେତପୁର ପ୍ରେରଣ କଲେ । ଏବଂ ଅର୍ଦ୍ଧଗ୍ରାସ ସମୟରେ ନିଜ ଲୋକଙ୍କୁ ବିଶ୍ୱାସ କରି ଅଗମ୍ୟ ସ୍ଥାନକୁ ଆସିଥିବାରୁ ଲକ୍ଷ୍ମଣ ସିଂହଙ୍କୁ ମୃଦୁ ମଧୁର ବାକ୍ୟରେ ନିନ୍ଦା ଓ ପରାମର୍ଶ ଦେଇ, ଘରେ ଗୃହକୁ ଫେରି ଯିବା ପାଇଁ ସେହି ଯୋଗୀଙ୍କ ମଠକୁ ତାହାକୁ ଘେନି ଗଲେ ଓ ସେହିଠାରେ ଯଥୋଚିତ ସାନ୍ତ୍ୱନା କଲେ । "ମୋହର ପ୍ରାଣ ରକ୍ଷାକାରୀ ଏହି ବ୍ରାହ୍ମଣ କିଏ ?" ବୋଲି ଲକ୍ଷ୍ମଣ ସିଂହ ପ୍ରଶ୍ନ କରନ୍ତେ, ଯୋଗୀ ଉତ୍ତର ଦେଲେ, "ବର୍ତ୍ତମାନ ତଦ୍ବିଷୟରେ କିଛି କହିବାକୁ ହେବ ନାହିଁ; ରାଜଦର୍ବାର ସମୟରେ ଆପଣ ସମସ୍ତ ବିଷୟ ଜାଣି ପାରିବେ ।" ଏହି କଥା ଶୁଣି ଲକ୍ଷ୍ମଣ ସିଂହ କୃତଜ୍ଞତା ପ୍ରକାଶପୂର୍ବକ ବସ୍ତ୍ରଖଚିତ ହୀରକ ଖଚିତ ଖଡ୍ଗଟି ମଦନ ସିଂହଙ୍କୁ ଉପହାର ଦେଲେ ଏବଂ ସେହି ରାତ୍ର ମଠରେ ନିଦ୍ରା କଲେ । ସଦାନନ୍ଦ ଯୋଗୀ ମଦନ ସିଂହଙ୍କୁ ସଙ୍ଗେ ଘେନି ଅବଶିଷ୍ଟ କାର୍ଯ୍ୟ ସମାପନ କରିବା ଲାଗି ପୁନର୍ପି ମଠରୁ ବହିର୍ଗତ ହେଲେ । ଏବଂ ଯିବା ପୂର୍ବେ ଲକ୍ଷ୍ମଣ ସିଂହଙ୍କ ନିକଟକୁ ଯାଇ କହିଲେ, "ବାବୁ, ତୁମ୍ଭେ ଆମ୍ଭ ପାଇଁ ଅପେକ୍ଷା ନକରି ବରଂ ଶେଷରେ ସ୍ୱଗୃହକୁ

Digitized by srujanika@gmail.com

ଦ୍ରୁତାଗମନ କରିବ; ଆମ୍ଭ ସେବକମାନେ ଆପଣଙ୍କର ଅବଶ୍ୟକୀୟ ସେବା କରିବେ ।



## ଏକାଦଶ ଅଧ୍ୟାୟ ।

——:o:——

ଏହାପରେ ଯୋଗୀ ଓ ମଦନ ସିଂହ ଚିତୋର ନଗରର ପଶ୍ଚିମାଭିମୁଖେ ପ୍ରସ୍ଥାନ କଲେ । ପ୍ରସ୍ଥାନ ସମୟକୁ ରାତ୍ର ଦେଢ଼ ପ୍ରହର ଅବଶିଷ୍ଟ ଥିଲା । ରାଜଦାଣ୍ଡ ଜନଶୂନ୍ୟ ହୋଇଥିବାରୁ ପୂର୍ବାପେକ୍ଷା ଅଧିକ ଶୀଘ୍ରରେ ପ୍ରସ୍ଥାନ କରି ଅନେକ କନ୍ଦ ନିକନ୍ଦ ପାର ହୋଇ ଅଳ୍ପ ସମୟ ମଧ୍ୟରେ ଗୋଟିଏ ବିଶାଳ ବୌଦ୍ଧ ମଠ ନିକଟରେ ପହଞ୍ଚିଲେ । ଏହି ସମୟରେ ରାଜସ୍ଥାନରେ ବୌଦ୍ଧଧର୍ମର ବିଶେଷ ପ୍ରାବଲ୍ୟ ନଥିଲେ ସୁଦ୍ଧା ଭାରତବର୍ଷରେ ଯେତେବେଳେ ବୌଦ୍ଧ ଧର୍ମ ପ୍ରଧାନ ଧର୍ମ ହୋଇଥିଲା ତେବେ ଚିତୋର ରାଜ୍ୟରେ ଏହି ମଠଟି ନିର୍ମିତ ହୋଇଥିଲା । ସେହି ମଠରେ ବୌଦ୍ଧଧର୍ମାବଲମ୍ବୀ କେହି ନଥିଲେ—ମଠର ନାମଟି କେବଳ ବିଦ୍ୟମାନ ଥିଲା । ଯୋଗୀ ଓ ସନ୍ନ୍ୟାସୀମାନେ ଦେଶାଟନ ସମୟରେ ଏହି ମନ୍ଦିରରେ ଦିନେ ଦୁଇଦିନ ବସା କରି ଯାଉଥିଲେ । ଅମ୍ଭ ଯୋଗୀ ଓ ଛଦ୍ମବେଶଧାରୀ ବ୍ରାହ୍ମଣ ସେହି ମଠ ଭିତରେ ପ୍ରବେଶ କରନ୍ତେ ଜଣେ ସେବକ ତାହାଙ୍କୁ ନିବାରଣ କଲା । କିନ୍ତୁ ମଦନ ସିଂହ ତାହାକୁ ଭ୍ରୂକ୍ଷେପ ନକରି ଯୋଗୀ ସହିତ ଅଗ୍ରସର ହେଲେ । ସେବକ ସେମାନଙ୍କ ସମ୍ମୁଖବର୍ତ୍ତୀ ହୋଇ ନିମ୍ନମତେ ସମ୍ଭାଷଣ କଲା:—

ସେବକ—ତୁମ୍ଭେମାନେ କିଏ ଓ ଏହି ମଠରେ ତୁମ୍ଭର କି କାର୍ଯ୍ୟ ଅଛି ?

ମଦନ—ଆମ୍ଭର ଜଣେ ସ୍ନେହୀ ଏଠାରେ ଅଛନ୍ତି । ତାହାଙ୍କ ପାଇଁ ଆମ୍ଭେ ଆସିଅଛୁଁ ?

Digitized by srujanika@gmail.com

ସେବକ—ତୁମ୍ଭମାନଙ୍କୁ, କିଏ ପଠାଇ ଅଛନ୍ତି ଓ ତୁମ୍ଭେ କାହାପାଇଁ ଆସିଅଛ ?
ମଦନ—ତୁ ଏହି ମଠରେ ଓ ଏହି ଦେଶର ଲୋକ ଅଟୁକି ?
ସେବକ—ମୋହର ଏହି ଗ୍ରାମ ନୁହେଁ; ମୁଁ ଜ୍ଞାନାନନ୍ଦ ଯୋଗୀଙ୍କ ଶିଷ୍ୟ ।
ମଦନ—ଆମ୍ଭେମାନେ ଜ୍ଞାନାନନ୍ଦଙ୍କ ଦର୍ଶନ ପାଇଁ ଆସିଅଛୁ ।
ସେବକ—ତେବେ ଅର୍ଦ୍ଧରାତ୍ର ସମୟରେ କାହିଁକି ଆସିଲ ? କାଲି ଦିନବେଳେ ଆସ ।

ସଦାନନ୍ଦ—ଅଜି ରାତ୍ରରେ ଆସିବାକୁ ସ୍ୱାମୀ ଆମ୍ଭଙ୍କୁ ଆଜ୍ଞା ଦେଇଅଛନ୍ତି—ତୁ ବୃଥା ଅନର୍ଥ କଥାରେ କାଳହରଣ ନକରି ଶୀଘ୍ର ଆମ୍ଭମାନଙ୍କ ଆଗମନ ବାର୍ତ୍ତା ତାହାଙ୍କୁ ଜଣାଅ ।

ସେବକ—ଅଗ୍ରେ ! ସେ ଭିତରେ ଅଛନ୍ତି କି ନାହିଁ ମୁଁ ଦେଖି ଆସେ । ଏପରି ସମୟରେ ଯୋଗୀ ଶ୍ମଶାନାଦରେ ଜପ କରିବାକୁ ଯାଆନ୍ତି । ସାଧାରଣରେ ଘରେ ରହନ୍ତି ନାହିଁ ! ଘରେ ଥିଲେ ତୁମ୍ଭ କଥା ଜଣାଇବି; ତୁମ୍ଭେ କିଏ ?

ସଦାନନ୍ଦ—ବସନ୍ତ ଭଟ୍ଟ ଆମ୍ଭଙ୍କୁ ପଠାଇ ଅଛନ୍ତି, ଆମ୍ଭେ ବିଶେଷ ଗୁପ୍ତ ସମ୍ବାଦ ଘେନି ଆସିଅଛୁ ।

ସେବକ ଏହି କଥା ଶୁଣି ଭିତରକୁ ଯାଇ ମଠର ପଶ୍ଚିମଗଡରେ କାନ୍ଥତଳ ସୁଡ଼ଙ୍ଗ ଭିତରେ ଗୋଟିଏ ପ୍ରକୋଷ୍ଠରେ ଅବସ୍ଥାନ କରିଥିବା ଜ୍ଞାନାନନ୍ଦ ଯୋଗୀଙ୍କୁ ଉପରୋକ୍ତ ବ୍ୟକ୍ତିଙ୍କ ବିଷୟ ଜଣାଇଲା । ଯୋଗୀ କିଛି ଭାବନା କରି ନବାଗତ ବ୍ୟକ୍ତିଙ୍କ ବିଷୟ ଜ୍ଞାତ ହେବାକୁ ଇଚ୍ଛା କରି ମଠର ଗୋଟିଏ ପ୍ରକୋଷ୍ଠକୁ ଯାଇ ଭିତରୁ କବାଟ ବନ୍ଦ କରି, ଦ୍ୱାର ନିକଟକୁ ସେମାନଙ୍କୁ ଆଣିବାକୁ ସେବକକୁ ଆଦେଶ ଦେଲେ । ସେମାନେ ଆସି ଦ୍ୱାର ନିକଟରେ ଦଣ୍ଡାୟମାନ ହୁଅନ୍ତେ ଯୋଗୀ ସେମାନଙ୍କ ସହିତ ନିମ୍ନମତେ କଥୋପକଥନ କଲେ:—

ଜ୍ଞାନାନନ୍ଦ—ମହାଶୟ ! ଆପଣ କିଏ ଓ ମୋହଠାରେ ଆପଣଙ୍କର କି ବିଷୟ ଅଛି ?

ମଦନ—ହେ ମହାତ୍ମା ! ଆମ୍ଭ ବିଷୟରେ ଆପଣ ସନ୍ଦେହାସ୍ପଦ ହେବା ଅନାବଶ୍ୟକ । ଆମ୍ଭେ ପର ନୋହୁଁ । କବାଟ ଫିଟାଇ ଆମ୍ଭ ସହିତ

Digitized by srujanika@gmail.com

କଥାବାର୍ତ୍ତା କର ।

ଜ୍ଞାନାନନ୍ଦ— ଅଛି; ତୁମ୍ଭଠାରେ ଆମ୍ଭର ବିଶ୍ୱାସ ଜନ୍ମିଲାପରେ କହେଲେ ସଙ୍କେତ ଜଣାଇ ଯାଇବ ?

ଚିଦାନନ୍ଦ— ଆପଣଙ୍କ ନାମ ପାଣ୍ଡୁରଙ୍ଗନାଥ ନ ହେବ ?

ଜ୍ଞାନ— ( ଅନ୍ତର୍ଦ୍ଧାନ୍ୱିତ ହୋଇ ) "ଯଥାର୍ଥ, ଯଥାର୍ଥ" ବୋଲି କହି ତକ୍ଷଣେ କପାଟ ଫିଟାଇ ବହିର୍ଗତ ହେଲେ । ତାହାଙ୍କ ଶରୀରର କାନ୍ତି ଓ ଆକାର ସନ୍ଦର୍ଶନ କରି ସେ କପଟ ସନ୍ୟାସୀ ଥିଲେ ବୋଲି ଯୋଗୀ ଓ ସିଂହ ଜାଣିପାରିଲେ । ପରେ ସେମାନେ ନିମ୍ନମତେ ସମ୍ଭାଷଣ କଲେ ।

ଜ୍ଞାନାନନ୍ଦ— ବାବୁ ! ପ୍ରଥମେ ତୁମ୍ଭ ବିଷୟ ଜଣାଇ, ଶୀଘ୍ର ଆମ୍ଭ ବସନ୍ତ ଭଟ୍ଟଙ୍କ କଥା କହ ।

ଚିଦାନନ୍ଦ— ମହାପ୍ରଭୁ ! ବସନ୍ତ ଭଟ୍ଟ ଏହି ନଗରକୁ ଆସିବା ଦିନଠାରୁ ଆମ୍ଭେ ଦୁଇଜଣ ତାହାଙ୍କ ଅନୁଚର ହୋଇଅଛୁଁ । ସେ ଆମ୍ଭଙ୍କୁ ନ ଜଣାଇ ଅଦ୍ୟପର୍ଯ୍ୟନ୍ତ କୌଣସି କାର୍ଯ୍ୟ କରିନାହାନ୍ତି । ଅଦ୍ୟ ସ୍ୱହସ୍ତରେ ଲକ୍ଷ୍ମଣ ସିଂହଙ୍କୁ ବନ୍ଦୀ କଲେ । ଅତଏବ ତୁମ୍ଭ ଦର୍ଶନ ପାଇଁ ସେ ଆମ୍ଭଙ୍କୁ ପଠାଇଲେ ।

ଏହି କଥା ଶୁଣି ଜ୍ଞାନାନନ୍ଦ ଅତୀବ ଅଧୀର ହେଲାପରି, "ଧରିଲ ! ବନ୍ଦୀକଲ ? ବାହାବା ! ଅହା ! ବସନ୍ତ ! ପ୍ରତିଜ୍ଞା ତୋହର ଏହା ! ଓଃ ! ଚକ୍ରବର୍ତ୍ତୀ ଯେଉଁ ଗୌରବ କରିବେ ତାହା ମୋହର ବର୍ଣ୍ଣନାତୀତ ।" ଏହିରୂପ ଅହ୍ଲାଦସୂଚକ ନାନାକଥା କହି "ସେ କେଉଁଠାରେ ଅଛନ୍ତି ଓ ମତେ କଅଣ କରିବାକୁ କହିଅଛନ୍ତି" ବୋଲି ପ୍ରଶ୍ନ କଲେ । ଚିଦାନନ୍ଦ ଯୋଗୀ କହିଲେ "ଆପଣଙ୍କୁ ଏହିକ୍ଷଣି ସଙ୍ଗେ ଘେନି ଆସିବାକୁ କହିଅଛନ୍ତି । ଦୁଇଘୋଡ଼ାବନ୍ଧା ଗାଡ଼ିରେ କାଳିକ ଲକ୍ଷ୍ମଣ ସିଂହଙ୍କୁ ବନ୍ଦକରିଅଛୁଁ । ଆପଣ ଯିବା ତକ୍ଷଣେ ପ୍ରସ୍ଥାନ କରିବାକୁ ହେବ । ବସନ୍ତ ଭଟ୍ଟଙ୍କୁ ଦେବାପାଇଁ ଚକ୍ରବର୍ତ୍ତୀ ତୁମ୍ଭ ହାତରେ ପଠାଇଥିବା ଭେଷ୍ଟା ଧରି ଆସିବାକୁ କହିଅଛନ୍ତି ।" ଏହା ଶୁଣି ପାଣ୍ଡୁରଙ୍ଗ ବିସ୍ମୟାପନ୍ନ ହୋଇ ଆଗନ୍ତୁକ ବ୍ୟକ୍ତିଦ୍ୱୟ ବସନ୍ତ ଭଟ୍ଟଙ୍କ ଆତ୍ମୀୟ ବୋଲି ବିଶ୍ୱାସ କରିବାକୁ ବାଧ୍ୟ ହେଲେ । ଯୋଗୀ ଓ ସିଂହ ଅତିଶୀଘ୍ର ପ୍ରସ୍ଥାନାରମ୍ଭ କରିବାକୁ ପ୍ରୋତ୍ସାହ ଦେଇ

Digitized by srujanika@gmail.com

କହିଲେ "ବାବୁ ! ଅମ୍ଭପାଇଁ ସେମାନେ ଅପେକ୍ଷା କରି ବସିଅଛନ୍ତି; ଆଉ ବିଶେଷ ରାତ୍ର ନାହିଁ; ତୁମ୍ଭେ ବିଳମ୍ବ କଲେ ରାତ୍ର ଶେଷହେବା ପୂର୍ବେ ସେମାନେ ଦଶ କୋଶ ବାଟ ଯାଇପାରିବେ ନାହିଁ ।" ଏହି କଥା ଶୁଣି ଜ୍ଞାନାନନ୍ଦ ପାତାଳ ମନ୍ଦିରକୁ ଯାଇ, ଅତି ଜାଗ୍ରତରେ ଗଡ଼ୁ ଭିତରେ ଥୋଇ ଭୂମିରେ ପୋତି ରଖି ଥିବା ପତ୍ର ଗୁଡ଼ିକ ଧରି ଉପରୋକ୍ତ ଶୂରଶିଖାମଣି ଦ୍ୱୟଙ୍କୁ ସ୍ୱଜନ ବୋଲି ଭାବି ସେମାନଙ୍କ ସହିତ ପ୍ରସ୍ଥାନ କଲେ । ସେମାନେ ଉକ୍ତ ବୌଦ୍ଧ ମଠ ତ୍ୟାଗକରି ପୂର୍ବାଭିମୁଖେ ଗମନ କଲେ । ଜ୍ଞାନାନନ୍ଦ ଚନ୍ଦ୍ରୋର ନଗରର କିଛି ବିକିଛି କିଛି ଜାଣି ନଥିଲେ । ଅତଏବ ଚଦାନନ୍ଦ ବାଟରେ ବସାଇରି ତାହାଙ୍କୁ ଭୁଲାଇ ଅନ୍ୟ ମାର୍ଗରେ ନେଉଥିବାର ସେ କିଛି ଜାଣି ପାରିଲେ ନାହିଁ । କେତେ ଦୂର ଯାଇ ସେମାନେ କ୍ରମମତେ କଥା ହେଲେ ।

ଜ୍ଞାନାନନ୍ଦ—ଏବେ ସେମାନେ ପୂର୍ବ ସ୍ଥାନ ଛାଡ଼ି ଯାଇ ନଥିବେ ପରା ?

ଚଦାନନ୍ଦ—ଅମ୍ଭେମାନେ ଯିବା ପର୍ଯ୍ୟନ୍ତ ସେମାନେ ଏକପାଦ ସୁଦ୍ଧା ଅଗ୍ରସର ହେବେନାହିଁ, ଶୀଘ୍ର ଚାଲ ।

ଜ୍ଞାନ—ଅମ୍ଭେମାନେ ବଡ଼ ଅଦୃଷ୍ଟବନ୍ତ: ଚକ୍ରବର୍ତ୍ତୀଙ୍କ ଠାରୁ ବିଶେଷ ପୁରସ୍କାର ପାଇବା । ଅସ, ଆମ୍ଭେ ଆଉ ଗୋଟିଏ କାର୍ଯ୍ୟ କରିବା । ତୁମ୍ଭେ ଏହି ବିଷୟ ଅତି ଗୋପନୀୟ ରଖିବ । ଏହି ଯୁବକ ଅମ୍ଭ ଲୋକତ ?

ଚଦାନନ୍ଦ—ଏହି ଯୁବାଟି ଅମ୍ଭ ଲୋକ । ଆପଣ କିଛି ସନ୍ଦେହ ନକରି ସ୍ୱେଚ୍ଛାମତେ କଥାବାର୍ତ୍ତା କରନ୍ତୁ ।

ଜ୍ଞାନ—ଅଚ୍ଛା, ପାଖକୁ ଆସ କହିବି; (ବାଟରେ ଅଳ୍ପ ଠିଆ ହୋଇ) ବାବୁ ! ଏହି ଚନ୍ଦ୍ରୋର ରାଜ୍ୟ ସଂରକ୍ଷକ ଓ ରାଜାଙ୍କ ପରମ ବନ୍ଧୁ, ମଦନ ସିଂହ ନାମରେ ଜଣେ ରାଜପୁତ୍ର ଅଛନ୍ତି । ସେ ଅତ୍ୟନ୍ତ ପରାକ୍ରମଶାଳୀ ଏବଂ ସେ ଜୀବିତ ଥିବା ଯାଏଁ ଚନ୍ଦ୍ରୋର ରାଜ୍ୟ ଅମ୍ଭ କରଗତ ହୋଇ ପାରିବ ନାହିଁ । ଅତଏବ ସେ କୌଣସି ଉପାୟରେ ଏହି ସମୟରେ ତାହାଙ୍କୁ ଧରି ବଧ କରିବା । ସେ ଆଜି ଧରା ନପଡ଼ିଲେ ତୁଇ ଗୁଇ ଦିନ ଏହି ଦ୍ୱାରେ ଭଦ୍ର ତାହାଙ୍କୁ ସଂହାର କରିବାକୁ ହେବ । ଏହା ନକଲେ ଅମ୍ଭ

କାର୍ଯ୍ୟ ଚଳିବ ନାହିଁ । "ଏଥି ବିଷୟରେ ତୁମ୍ଭ ଅଭିପ୍ରାୟ କଅଣ ?" ବୋଲି ବ୍ରାହ୍ମଣ ବେଶଧାରୀ ମଦନ ସିଂହଙ୍କୁ ପ୍ରଶ୍ନ କଲେ ।

ମଦନ ସିଂହ ଏହି କଥା ଶ୍ରବଣ କରି ନିଜ ପ୍ରତି ଜ୍ଞାନାନନ୍ଦଙ୍କ ପ୍ରୋତା-ଚରଣ ବିଷୟ ଜ୍ଞାତ ହୋଇ ଗୁପ୍ତ କଣ୍ଢେଇ ଉପରେ ହାତ ପକାଇ ଯୋଗୀଙ୍କ ପ୍ରଶ୍ନର ଉତ୍ତର ନିମନ୍ତେ ସଦାନନ୍ଦଙ୍କ ମୁଖକୁ ଅନାଇ ରହିଲେ । ସଦାନନ୍ଦ ସଙ୍କେତ ଦ୍ୱାରା ସିଂହଙ୍କୁ ନିବାରଣ କରି ଅଉ କେତେକ ବିଷୟ ତାହାଙ୍କଠାରୁ ଜାଣିବାକୁ ଇଚ୍ଛା କରି ଏହି ଉତ୍ତର ଦେଲେଃ—"ବାବୁ ! ମଦନ ସିଂହଙ୍କୁ ପ୍ରେତପୁରକୁ ପଠାଇବା ଲାଗି ଆମ୍ଭେମାନେ ମଧ୍ୟ ଅନେକ ଦିନ ହେଲା ଚେଷ୍ଟା କରୁଅଛୁଁ । ସେ ଜଣେ ଅଜେୟ ଶୂର ଅଟନ୍ତି । ତାଙ୍କ ବିଷୟରେ ଆମ୍ଭର ଏହି ଯୁବା ଭଲ ଜାଣେ ।" ତପରେ ମଦନ ସିଂହ କହିଲେ "ମହାତ୍ମନ୍ ! ମଦନ ସିଂହ ଏବଂ ମୁଁ ଅଚ୍ଛେଦ୍ୟ ସ୍ନେହ ପାଶରେ ଆବଦ୍ଧ । ଆମ୍ଭର ପରସ୍ପର ଭେଦ ନାହିଁ । କିନ୍ତୁ ସେ ସତୀ ପକ୍ଷୀୟ ଓ ମୁଁ ଚକ୍ରବର୍ତ୍ତୀ ପକ୍ଷୀୟ ହେବା ଯୋଗୁଁ ସଙ୍କଟରେ ପରବଶ ହୋଇ ମୁଁ ତାହାଙ୍କ ମରଣୋପାୟ ସାଧନ କରୁଅଛୁ । ତାହାଙ୍କୁ ସାଥିରେ ଧରି ଆସିବାକୁ ମୁଁ ଜଣକୁ ପଠାଇ ଅଛୁ । ଏତେବେଳକୁ ସେମାନେ ସଙ୍କେତ ସ୍ଥଳକୁ ଆସିଥିବେ । ଚାଲ, ଆମ୍ଭେ ଶୀଘ୍ର ଯିବା ।" ଏହି କଥା ଶ୍ରବଣ କରି ଜ୍ଞାନାନନ୍ଦ ମର୍ଦ୍ଦାନନ୍ଦ ଉପଲବ୍ଧିପୂର୍ବକ "ମୁଁ ନିଜେ ସେହି କାର୍ଯ୍ୟ କରିବି । ଏହି ହାତରେ ସିଂହଙ୍କୁ ବଧ କରି ଚକ୍ରବର୍ତ୍ତୀଙ୍କଠାରୁ ପୁରସ୍କାର ପାଇବି ।" ଏହିରୂପ ଅନେକ ଆନନ୍ଦ-ସୂଚକ କଥା କହି ବସିଲେ । ତତ୍ପରେ ପୂର୍ବ କଥିତ ଗୁପ୍ତ ମନ୍ଦିର ଦିଗକୁ ପ୍ରସ୍ଥାନ କଲେ ଓ ଜ୍ଞାନାନନ୍ଦଙ୍କୁ ଧୁଡ଼ିଙ୍କ ବାଟେ ଭିତରକୁ ନେଲେ । କେତେ-କ୍ଷଣ ସେହି ଅନ୍ଧାରମୟ ଘରେ ବସି, କକ୍ଷରୁ ଦାଗଢ ବଡ଼ାଣ୍ଡି ତଳେ ଥୋଇ ଜ୍ଞାନାନନ୍ଦ ସ୍ୱାମୀ କହିଲେ, "ବାବୁ ! ସେମାନେ ଆମ୍ଭ ପାଇଁ କୋଠାରେ ଜଗି ବସିଥିବେ; ଶୀଘ୍ର ସେଠାକୁ ଯିବା ପରା ?" ସଦାନନ୍ଦ ଓ ମଦନ ସିଂହ କହିଲେ, "ଆମ୍ଭମାନଙ୍କର ମଦନ ସିଂହଙ୍କୁ ବଧ କରିବା ପ୍ରଧାନ ବିଷୟ ଅଟେ । କୋଠାକୁ ଯିବାର କେତେତ ଆବଶ୍ୟକତା ନାହିଁ । ଆମ୍ଭ ଯିବାର ବିଳମ୍ବ ଦେଖି ସେମାନେ ଏତେ ବେଳକୁ ଲକ୍ଷ୍ମଣ ସିଂହଙ୍କୁ ଧରି ପଳାଇଥିବେ । ଲକ୍ଷ୍ମଣ ସିଂହ ତାଙ୍କ ହାତରେ ପଡ଼ିଲା; ମଦନ ସିଂହ ଆମ ହାତରେ ପଡ଼ିବ । ଏଣୁ ଏସ୍ଥଳ ଛାଡ଼ି ଆମ୍ଭେ

Digitized by srujanika@gmail.com

ଯିବା ନାହିଁ । ସଦାକୁ ଯାଇ ସେମାନେ ଆସୁ ଅଛନ୍ତି କି ନାହିଁ ଆମ୍ଭେ ଦେଖି ଆସୁଁ ।" ଅନନ୍ତର ଉଭୟେ ବାହାରକୁ ଯାଇ ନିମ୍ନମତେ କଥୋପକଥନ କଲେ:—

ଚିଦାନନ୍ଦ—ବାବୁ ! ଏହି ଦୁଷ୍ଟକୁ କରିବା କଅଣ ? ବଧ କରିବା ଉଚିତ କି ?

ମଦନ ସିଂହ—କାପୁରୁଷ ଓ ନୀଚସ୍ୱଭାବ ପୁରୁଷକୁ ବଧ କରିବା ଆମ୍ଭମାନଙ୍କ ପକ୍ଷେ ଅନୁଚିତ । ଏଣୁ ମୁଁ ଯାଇ ମୋହର ପିତୃବ୍ୟଙ୍କୁ ସଙ୍ଗେ ନେଇ ଆସିବି—ଏହି ଚଣ୍ଡାଳକୁ ବାନ୍ଧିନେଇ କାଲି ରାଜାଙ୍କଠାରେ ସମର୍ପଣ କରିଦେବା ।

ଚିଦାନନ୍ଦ—ଏହି ଉପାୟଟି ଉତ୍ତମ ହୋଇଅଛି । ତୁ ଦାଦାଙ୍କ ନିକଟକୁ ଯାଅ । ତୁ ଆସିବା ଯାଏ ମୁଁ ଏଠାରେ ଥିବି ।

ମଦନ ସିଂହଙ୍କୁ ପଠାଇ ଦେଇ ଜ୍ଞାନାନନ୍ଦ ପଳାୟନ ନକଲା ପରି ତାହାକୁ ଜଗି ବସିଲେ । ମଦନ ଅତିଶୀଘ୍ର ଗୃହକୁ ଯାଇ ତାହାକୁ ଅପେକ୍ଷା କରି ବସିଥିବା ଦାଦା ପ୍ରତାପ ସିଂହଙ୍କ ନିକଟବର୍ତ୍ତୀ ହୋଇ ସେହି ଭାବରେ ଘଟଣା ସକଳ ବୃତ୍ତାନ୍ତ ତାହାଙ୍କୁ ଜଣାଇ ଘରେ ଥିବା ସମସ୍ତ ସେବକମାନଙ୍କୁ ସଙ୍ଗେ ନେଇ ଅତିଶୀଘ୍ର ଗୁପ୍ତ ମନ୍ଦିର ନିକଟରେ ପହଞ୍ଚିଲେ । ଇତିମଧ୍ୟରେ ଚିଦାନନ୍ଦ ଭିତରେ ପ୍ରବେଶ କରନ୍ତେ "ସେମାନେ ଆସିଲେ କି" ବୋଲି ଜ୍ଞାନ ପ୍ରଶ୍ନ କଲେ । ଯୋଗୀ କହିଲେ "ଆମ୍ଭ ବ୍ରାହ୍ମଣ ଯୁବକକୁ ସେମାନଙ୍କୁ ଆଣିବା ପାଇଁ ପଠାଇ ଅଛୁଁ । ସେମାନେ ଆସୁଥିବେ, ମାତ୍ର ନୂଆ ଲୋକ ଦେଖିଲେ ସେମାନେ ପଳାୟନ କରିବାର ଆଶଙ୍କା ହେଉଅଛି ।" ଜ୍ଞାନାନନ୍ଦ କହିଲେ "ଯେ କୌଣସି ମତେ ଏହି କାର୍ଯ୍ୟ ନିର୍ବିଘ୍ନରେ ଚଳିବା ବାଞ୍ଛନୀୟ । ଅତଏବ ମୁଁ ଲୁଗା ଘୋଡ଼ି ହୋଇ ଏହିଠାରେ ବସିଥିବି । ସେମାନେ ଆସିବା ତକ୍ଷଣେ ମୋହର ଗୋଡ଼କୁ ଟିକିଏ ଚିମୁଟି ଦେଲେ, ଉଠି ମଦନକୁ ବଧ କରିବି ।" ଏହିରୂପ କହି ବସ୍ତ୍ରାବୃତ ହୋଇ ଘରର ଏକ କୋଣରେ ବସି ରହିଲେ । ଏହି ଅବସରରେ ଚିଦାନନ୍ଦ ଯୋଗୀ ଜ୍ଞାନାନନ୍ଦଠାରେ ଥିବା କାଗଜ ପତ୍ରଗୁଡ଼ିକ ସଂଗ୍ରହ କରି ତାହାଙ୍କ ସହିତ ବାକ୍ୟାଳାପ କରି ବସିଲେ । ଏମନ୍ତ ସମୟରେ ପ୍ରତାପ ସିଂହ ଓ ମଦନ ସିଂହ ହଠାତ୍ ଭିତରେ ପ୍ରବେଶ କଲେ । ତତ୍କ୍ଷଣାତ୍ ଜ୍ଞାନାନନ୍ଦ ସ୍ୱାମୀ ଉଠି

Digitized by srujanika@gmail.com

,'ଏହି ପରା ମଦନ ସିଂହ ? ଖଡ୍ଗ, ଖଡ୍ଗ" ବୋଲି ସସ୍ତ୍ର ହୁଅନ୍ତେ, ମଦନ ସିଂହ ସମ୍ମୁଖକୁ ଆସି, "ରେ, ପାମର ! ଖଡ୍ଗ କାହିଁକି ଲୋଡ଼ୁଅଛୁ ? ତୋହର ଏହି ବେଶ ଓ ବୃତ୍ତି ଦେଖିଲେ, ତୁ ମଦନ ସିଂହଙ୍କୁ କଷ୍ଟ କଲୁ ପରି ଦିଶୁଛୁ ଏହା ! ଅସ୍ତ, ହେଉ, ଅସ ଦେଖିବା । ମୁଁ ନଷ୍ଟେ ମଦନ ସିଂହ, ଏହି ଖଡ୍ଗ ନିଅ ।" ବୋଲି ଖଡ୍ଗଟିଏ କଢ଼ାଇ ଦେଲେ । କିନ୍ତୁ ପ୍ରତାପ ସିଂହଙ୍କ ଆଜ୍ଞାରେ ସେବକ-ମାନେ ଜ୍ଞାନାନନ୍ଦକୁ ବନ୍ଧନ କଲେ । ପରେ ପ୍ରତାପ ସିଂହ ତାହାଙ୍କୁ ନିଜ ଘରକୁ ନେଇ ରାତ୍ରି ଶେଷ ପର୍ଯ୍ୟନ୍ତ ଗୋଟିଏ ପ୍ରକୋଷ୍ଠରେ ବନ୍ଦ କଲେ । ସଦାନନ୍ଦ ସ୍ୱାମୀ କକ୍ଷସ୍ଥ କାଗଜ କେତୋଟି ମଦନ ସିଂହଙ୍କୁ ଦେଇ, ଦର୍ବାର ସମୟରେ ସେ ସବୁ ରାଜାଙ୍କୁ ସମର୍ପଣ କରିବାକୁ କହି ନିଜ ମଠକୁ ଫେରିଗଲେ ।



## ଦ୍ୱାଦଶ ଅଧ୍ୟାୟ



ତହିଁ ଆରଦିନ ପ୍ରାତଃକାଳରେ ମହାବ୍ରଣାଙ୍କ ଦର୍ବାର ହେଲା । ସଭା ମଣ୍ଡ-ପରେ ରାଜବନ୍ଧୁମାନେ, ରାଜପୁତ୍ର ଶୂରମାନେ ଓ ସାମନ୍ତମାନେ ଯେ ଯାହା ମର୍ଯ୍ୟାଦାରେ ପରିଚ୍ଛଦକଙ୍କ ସହିତ ନାନା ଭୂଷଣରେ ଭୂଷିତ ହୋଇ ଉପଯୁକ୍ତ ସ୍ଥାନରେ ଉପବେଶନ କଲେ । ତତ୍ପରେ ମତ୍ତ ଗଜେନ୍ଦ୍ର ପୃଷ୍ଠରୁ ଅବତରଣ କରି ସ୍ୱସ୍ତି ବେଦ ଦଣ୍ଡଧାରୀ ମାର୍ଗ ପରିଶୋଧନକାରୀ ଭୃତ୍ୟଦ୍ୱୟଙ୍କ ସହିତ ଶ୍ରୀଲକ୍ଷ୍ମଣ ସିଂହ ମହାରାଜା ଓ ଭୀମସିଂହ ମହାରାଜା ସଭା ଗୃହରେ ପ୍ରବିଷ୍ଟ ହେଲେ । ସଭା ମନ୍ଦିରଟି ଦୁଇ ସହସ୍ର ଲୋକେ ବସିପାରିବା ଭଳି ବିଶାଳ— ଶାଳଗ୍ରାମ ଶିଳାରେ ନିର୍ମିତ ଓ ଅତି ସ୍ନିଗ୍ଧ ଭିତ୍ତି ବିଶିଷ୍ଟ । ଉପରଭାଗ କାଷ୍ଠ ଓ ତହୁ ସମ୍ମନ କାରୁକାର୍ଯ୍ୟ ଚାରିରେ ଖଚିତ । ତଳେ ନାନାବର୍ଣ୍ଣର ରତ୍ନଖଚିତ କମ୍ବଳ ବିଛା ହୋଇ ଥିଲା । ଅତଏବ ଲକ୍ଷ୍ମୀମନ୍ଦିର ପରି ବିକାଶ ପାଉଥିଲା । ଇଦୃଶ ସଭା-ମନ୍ଦିରରେ ପ୍ରବେଶ କରି ନୃପଦ୍ୱୟ ସ୍ଫଟିକ ମଣି କାଞ୍ଚନାଦିରେ ନିର୍ମିତ ବେଦିକାର

Digitized by srujanika@gmail.com

ଉପର ଭାଗସ୍ଥ ସୁବର୍ଣ୍ଣ ଓ ହସ୍ତିଦନ୍ତର ସିଂହାସନରେ ମହାରାଜା ଲକ୍ଷ୍ମଣ ସିଂହ ବସିଥିଲେ । ତାହାଙ୍କ ଦକ୍ଷିଣ ପାର୍ଶ୍ୱରେ ରାଜପୁତ୍ର କୁଳପ୍ରଦୀପ ଭୀମସିଂହ ଓ ତାହାଙ୍କ ସିଂହବଂଶ ଦ୍ୱାଦଶପୁତ୍ର । ତାହାଙ୍କ ପାର୍ଶ୍ୱରେ ତାହାଙ୍କ ମାମୁ ରାଜପୁତ୍ର ସେନାଧିପ ଗୋରାସିଂହ । ତାଙ୍କ ଆଗକୁ ବହୁ ପରାକ୍ରମଶାଳୀ ବାଳକ ଗୋରାସିଂହଙ୍କ ପୁତ୍ର "ବେଦଲ" ଉପବେଶନ କଲେ । ମହାରାଣାଙ୍କ ବାମ ପାଶରେ ସାମନ୍ତ ପ୍ରଭୃତିମାନେ, ମନ୍ତ୍ରୀ ସେନାଧ୍ୟକ୍ଷ ପ୍ରମୁଖ ବ୍ୟକ୍ତିମାନେ ଓ ସେମାନଙ୍କ ପଛକୁ ବିଦେଶାଗତ ବୈତାଳିକ ମାନେ ଉପବେଶନ କଲେ । କିନ୍ତୁ ପ୍ରତାପ ସିଂହ ଓ ମଦନସିଂହ କୌଣସି କାରଣରୁ ଆସି ନଥିବାରୁ ସଭ୍ୟମାନେ ତାହାଁର କାରଣ ତର୍କଣା କରୁ ଥିଲେ । ପ୍ରତାପସିଂହ ଓ ମଦନ ସିଂହଙ୍କ ଅନୁପସ୍ଥିତିର କାରଣ ସଭ୍ୟମାନଙ୍କୁ ଜଣାଇବାକୁ ଇଚ୍ଛା କରି ଲକ୍ଷ୍ମଣସିଂହ ସଭାକୁ ଅତାଇଁ ଏହି ରୂପ କହିଲେ । "ହେ, ସଭାସଦ୍ ବର୍ଗ ! ଅମ୍ଭ ଦେଶପ୍ରତି ଅଲାଉଦ୍ଦିନ ଯେଉଁ ଦଣ୍ଡଯାତ୍ରା କରିବାକୁ ମନ କରଅଛନ୍ତି ତଦ୍ୱିଷୟରେ ସବିଶେଷ ତୁମ୍ଭମାନଙ୍କୁ ଜଣାଇବା ନିମିତ୍ତ ଏହି ଦର୍ବାରକୁ ଆପଣମାନଙ୍କୁ ଆହ୍ୱାନ କରଅଛୁଁ । ଗତ ରାତ୍ରି ସେହି ବିଷୟ ଅମ୍ଭଙ୍କୁ ସମ୍ପୂର୍ଣ୍ଣରେ ଜଣାଗଲା । କିନ୍ତୁ ଆମ୍ଭ ପ୍ରତାପ ଓ ମଦନସିଂହ ଏ ପର୍ଯ୍ୟନ୍ତ ସଭାକୁ ଆସି ନଥିବାର ଦେଖି ଅମ୍ଭେ ସଂଶୟାପନ୍ନ ହୋଇଅଛୁଁ । ସେମାନଙ୍କ ଅନୁପସ୍ଥିତିର କାରଣ କେହି ଜାଣି ଅଛନ୍ତି କି ?" ରାଜାଙ୍କ ଏହି ପ୍ରଶ୍ନ ଶ୍ରବଣ କରି ସଭ୍ୟମାନେ କିଛି ଜାଣି ନଥିବାରୁ ପରସ୍ପର ମୁଖାବଲୋକନକରି, ପ୍ରକୃତ କାରଣ ଜାଣିବାକୁ ଉତ୍କଣ୍ଠିତ ହୋଇ ବସି ରହିଲେ । ଏବଂ ସଭା ମଧ୍ୟରେ ବସନ୍ତ ଭଟ୍ଟଙ୍କୁ ନଦେଖି ନାନାମତର ତର୍କ ବିତର୍କ କଲେ । ଇତ୍ୟବସରେ ଜଣେ ଭୃତ୍ୟ ଆସି ଉକ୍ତ ସିଂହ ଦ୍ୱୟଙ୍କ ଆଗମନ ବାର୍ତ୍ତା ଜଣାଇଲା । ସଭ୍ୟମାନେ ତାହାଙ୍କୁ ଅପେକ୍ଷା କରି ବସିଅଛନ୍ତି ଏମନ୍ତ ସମୟରେ ସେମାନେ ଜଣେ ନୀଳ ବର୍ଣ୍ଣ ଓ ଦୃଢ଼ କାୟ ପୁରୁଷଙ୍କୁ ସଙ୍ଗେ ଘେନି ଶସ୍ତ୍ରବଦ୍ଧ ହୋଇ ସଭାରେ ପ୍ରବେଶ କରି ରାଜାଙ୍କୁ ନମସ୍କାରକରି ସେହି ପୁରୁଷଙ୍କୁ ତାହାଙ୍କ ସମ୍ମୁଖରେ ଦଣ୍ଡାୟମାନ କରାଇଲେ । ଲୋକଟିର ଦୁଇହସ୍ତ ପୃଷ୍ଠ ଭାଗରେ ଦୃଢ଼ରୂପେ ବନ୍ଧା ହୋଇଅଛି, ମୁଣ୍ଡଉପରକୁ ନଟେକି ସଦା ଅଧୋଦୃଷ୍ଟି କରୁଅଛି । ସେହି ସନ୍ନ୍ୟାସୀବେଶଧାରୀ ପୁରୁଷକୁ ଦେଖି ସଭ୍ୟମାନେ ସେହି ଅଦ୍ଭୁତ ବ୍ୟାପାର ବୁଝିବା

Digitized by srujanika@gmail.com

ଲଗି ଅଣାଇ ଥିଲେ ରୋହିତାଶ୍ୱଗଡ଼ରେ ରହିଲେ । ପରେ ପ୍ରତାପସିଂହ ନିଜ ଆସନରେ ଆସୀନ ହୁଅନ୍ତେ, ମଦନସିଂହ ରାଜାଙ୍କ ସମ୍ମୁଖବର୍ତ୍ତୀ ହୋଇ ଯୋଡ଼ ହସ୍ତରେ ଜଣାଇଲେ "ହେ ମହାରାଜ ! ଏହି ଦଣ୍ଡାୟମାନ ବ୍ୟକ୍ତି ଜଣେ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଅଟେ । ଆଲାଉଦ୍ଦିନଙ୍କ ହସ୍ତେ ରତ୍ନ ଆମ୍ଭଠାରେ ମାଦ୍ରୋଥପୁରରେ କାଳଯାପନ କରୁଥିବା ବସନ୍ତଭଟ୍ଟ ଓ ଦିଲ୍ଲୀଚକ୍ରବର୍ତ୍ତୀଙ୍କ ମଧ୍ୟରେ ଚଳୁଥିବା ଉତ୍ତର ପ୍ରତ୍ୟୁତ୍ତର ବାହକ ଅଟେ । ଆତ୍ମପରିଚୟ ଗୋପନ କରିବା ସକାଶେ ସନ୍ନ୍ୟାସୀ ବେଶ ଧାରଣ କରିଅଛି । ଏହାଠାରୁ ପ୍ରାପ୍ତହେବା ବେଳେକ ଚିଠି ଦେଇରୁ ବସନ୍ତଭଟ୍ଟ ଜଣେ ଦୁରାତ୍ମା ବୋଲି ଏବଂ ଏହି ଲୋକର ବୃତ୍ତି ପତ୍ରବାହକ ବୋଲି ପୂର୍ଣ୍ଣ ନିଦର୍ଶନ ମିଳୁଅଛି । ଏହାର ଯଥାର୍ଥ ନାମ ପାଣ୍ଡୁରଙ୍ଗନାଥ । ମାତ୍ର ଜ୍ଞାନାନନ୍ଦସ୍ୱାମୀ ବୋଲାଉ ଅଛି ।" ଏହା କହି ହସ୍ତସ୍ଥିତ ପତ୍ର ଗୁଡ଼ିକ ଲକ୍ଷ୍ମଣ ସିଂହଙ୍କୁ ବଢ଼ାଇ ଦେଲେ । ବସନ୍ତଭଟ୍ଟ ଜଣେ ଦୁରାତ୍ମା ବୋଲି ଶୁଣିବା ମାତ୍ରେ ସଭ୍ୟମାନେ ବିସ୍ମୟାପନ୍ନ ହେଲେ । ଉକ୍ତ ପତ୍ର-ଗୁଡ଼ିକ ପାରସ୍ୟ ଭାଷାରେ ଲେଖା ହୋଇଥିବାରୁ ତାହା ଗୋବିନ୍ଦଙ୍କୁ ପାଠକରିବାକୁ ଲକ୍ଷ୍ମଣସିଂହ ଆଦେଶ ଦେଲେ । ଗୋବିନ୍ଦ ପତ୍ରଗୁଡ଼ିକ ଆମୂଳ ପାଠ କରି ତହିଁରୁ ଗୋଟିଏ ପ୍ରଧାନ ପତ୍ରର ନିମ୍ନମତେ ପାଠ କଲେ ।

"ଶ୍ରୀ ଦିଲ୍ଲୀଚକ୍ରବର୍ତ୍ତୀ ଅଲାଉଦ୍ଦୀନଙ୍କର ବସନ୍ତଭଟ୍ଟଠାକୁ ଲେଖିବାର ପତ୍ର ଏହି:—

ମିତ୍ର ! ତୋ ସହିତ କପଟ କଳହ ସଙ୍କଳ୍ପନା କରିବା । ଯଥାର୍ଥରେ ତୋହ ପ୍ରତି ଅନାଗ୍ରହ ପ୍ରକାଶ କଲାପରି ସଭାରେ ପ୍ରବର୍ତ୍ତିବା, ସେହିଦିନ ରାତ୍ର ଗୁପ୍ତଭାବରେ ତୋତେ କାରାଗୃହ ମୁକ୍ତ କରାଇବା, ଓ ଚିତୋର ନଗର ରହସ୍ୟାଦି ବୁଝି ଆସିବାକୁ ତୋତେ ସେଠାକୁ ପ୍ରେରଣ କରିବା ବିଷୟ ଏପର୍ଯ୍ୟନ୍ତ କେହି ଜାଣିନାହାନ୍ତି । ତୁ ଲକ୍ଷ୍ମଣସିଂହଙ୍କୁ ବନ୍ଦୀକରି ଆଣିବାକୁ ଅନେକ ଯତ୍ନ କରୁଅଛୁ ବୋଲି ଶ୍ରବଣକରି ଆମ୍ଭେ ବିଶେଷ ସନ୍ତୁଷ୍ଟ ହୋଇଅଛୁ । କେଉଁପରି ହେଲେ ଅବଶ୍ୟ ଲକ୍ଷ୍ମଣସିଂହଙ୍କୁ ଧରି ଆଣିବାକୁ ହେବ । ତେବେ ରାଜପୁତ୍ରମାନେ ନିଜ ପ୍ରଭୁଙ୍କ ପ୍ରାଣ ରକ୍ଷା କରିବା ସକାଶେ ଆମ୍ଭେ କହିବା ପରି ଶୁଣିବାକୁ ବାଧ୍ୟ ହେବେ । ଆମ୍ଭର ଦଣ୍ଡଯାତ୍ରା କରିବା ନିଶ୍ଚୟ ହେଲେହେଁ, ଅମ୍ଭେ ସେପରି କରିବୁ ନାହିଁ ବୋଲି ଦୃଢ଼ରେ ସେମାନଙ୍କୁ କହି ରାଜପୁତମାନେ ଦଣ୍ଡଯାତ୍ରା

Digitized by srujanika@gmail.com

ବିଷୟ ପାପୋର ଗଳ୍ପପର କରିବୁ । ଇତି, ମହମ୍ମଦ ଆଲାଉଦ୍ଦୀନ୍"—

ଗୋଗ ସିଂହ ଏହିରୂପ ପାଠ କରନ୍ତେ ସଭାସ୍ଥମାନେ ଅଶ୍ଚର୍ଯ୍ୟ ହୋଇ ଅତ୍ୟନ୍ତ ଗଗାନ୍ୱିତ ହେଲେ । ଭୀମ ସିଂହ ପାଣ୍ଡୁରଙ୍ଗନାଥଙ୍କୁ ଚାହିଁ ପ୍ରଶ୍ନ, କଲେ, "ତୁ ଏଥିକୁ କଅଣ କହୁ ? ସତ୍ୟ କଥା କହ ।" ସେ କହିଲା, "ମୁଁ ତୁମ୍ଭଙ୍କୁ ଉତ୍ତର ଦେବ ନାହିଁ । ତୁମ୍ଭ ଇଚ୍ଛାମତେ କାର୍ଯ୍ୟ କର ।" ପରେ ଲକ୍ଷ୍ମଣ ସିଂହ ସଭାକୁ ଚାହିଁ କହିଲେ, "ବସନ୍ତ ଭଟ୍ଟ ଅମୃଠାରେ ବହୁ ଚମତ୍କାରରେ ପ୍ରବର୍ତ୍ତି ଥିବାରୁ ସେ ଜଣେ ଦୁର୍ମିର୍ଗଗାମୀ ବୋଲି କେହି ଜାଣି ପାରିଲେ ନାହିଁ । ଅମ୍ଭ ଦେଶରେ କେତେକ ଲୋକ କୁତ୍ସିତ କାର୍ଯ୍ୟ କରୁଅଛନ୍ତି ବୋଲି ଓ ସେମାନଙ୍କୁ ଧରାଇ ଦେବାକୁ କହି ମୋହର ବିଶ୍ୱାସ ଜନ୍ମାଇ ଗତ ରାତ୍ରି ମଧ୍ୟେ ଏକାକୀ ଗୋଷ୍ଠାକୁ ନେଇ ଯାଇ, ଶକଟରେ ବସାଇ ବନ୍ଦ କରି କଏଦ ସ୍ୱରୂପ ଦିଲ୍ଲୀକୁ ନେଇ ଯିବାକୁ ଯତ୍ନ କଲା । ମୁଁ ମୁକ୍ତ ହେବାକୁ ଚେଷ୍ଟା କରନ୍ତେ ମୋହର ପ୍ରାଣ ନେବାକୁ ସୁଦ୍ଧା ଯତ୍ନବାନ ହେଲା । କିନ୍ତୁ ମୋହର ସୌଭାଗ୍ୟ ବଶତଃ ଅମ୍ଭ ଚିଦାନନ୍ଦ ଯୋଗୀ ଓ ଆଉ ଏକ ବ୍ୟକ୍ତି ସେହି କ୍ଷଣକ ଅସି ସେହି ଲୋମୁଣ ବ୍ୟାଘ୍ରକୁ ପ୍ରେତ ପୁରକୁ ପ୍ରେରଣ କରି ମୋହର ପ୍ରାଣରକ୍ଷା କଲେ । ଅହା ! ମୋହର ପ୍ରାଣ ସଂରକ୍ଷକ ଯୋଗୀଙ୍କ ସହଗାମୀ ସେହି ମହାପୁରୁଷ କିଏ ମୁଁ ଜାଣିପାରିଲି ନାହିଁ ।" ରାଜାଙ୍କ ଶେଷୋକ୍ତ ବାକ୍ୟ ଶ୍ରବଣକରି ମଦନ ସିଂହ ରାଜପୁତମାନଙ୍କ ମଧ୍ୟରୁ ପ୍ରବଳ ସିଂହବତ୍ ଗାତ୍ରୋତ୍ଥାନ କରି, ସଭାସଦ୍‌ବର୍ଗଙ୍କୁ ବିସ୍ମୟାପନ୍ନ କରାଇ, ଉଚ୍ଚୈଃସ୍ୱରରେ ଜଣାକଲେ । "ହେ ଦେବ ! ବ୍ରାହ୍ମଣ ବେଶରେ ଶ୍ରୀ ସର୍ଦ୍ଦାରଙ୍କ ପ୍ରାଣରକ୍ଷା କରିଥିବା ବ୍ୟକ୍ତି ଏହି ଅଧମ ଅଟଇ । ମହାରାଜ ଅନନ୍ଦରେ ମତେ ଯେଉଁ ରତ୍ନଶ୍ରେଷ୍ଠ ପୁରସ୍କାର ଦେଇଥିଲେ, ତାହା ଏହି" ଏହା କହି ରତ୍ନ ଟେକ ଦେଖାଇଲେ । ଏହାଶୁଣି ଭୀମ ସିଂହ ଆସନ ତ୍ୟାଗକରି, ପରମାନନ୍ଦ ଲାଭକରି, ମଦନ ସିଂହଙ୍କୁ ଆଲିଙ୍ଗନ କରି ନାନାମତେ ସ୍ତୁତିକଲେ । ଏବଂ ମଦନ ସିଂହଙ୍କୁ ନିଜ ପ୍ରାଣରକ୍ଷକ ବୋଲି ଜାଣିବାମାତ୍ରେ ଲକ୍ଷ୍ମଣ ସିଂହ ସ୍ୱକଣ୍ଠ ବିରାଜିତ ମୁକ୍ତାହାର ବାହାରକରି ତାହାଙ୍କ କଣ୍ଠରେ ଲଗାଇଦେଇ ତାହାଙ୍କୁ ଗାଢ଼ାଲିଙ୍ଗନ କଲେ । ଭୀମ ସିଂହଙ୍କ ଆଦେଶରେ ପାଣ୍ଡୁରଙ୍ଗ କାରାଗୃହକୁ ପ୍ରେରିତ ହେଲା । ଦର୍ବାର ଭାଙ୍ଗ କରିବା

Digitized by srujanika@gmail.com

ସମ୍ପ୍ରତି ଚିଦାନନ୍ଦ ଯୋଗୀ ବ୍ୟସ୍ତ ସମସ୍ତ ହୋଇ ସେଠାରୁ ଉଠି, ସମସ୍ତ ରାଜପୁତମାନଙ୍କୁ ଅତିକ୍ରମ କରି ଭୀମ ସିଂହଙ୍କ ନିକଟବର୍ତ୍ତୀ ହେଲେ । ତାହାଙ୍କୁ ଦେଖି ରାଣା ଓ ଭୀମସିଂହ ନମସ୍କାର କରି, କୃତଜ୍ଞତାସୂଚକ କେତେକ କଥା କହନ୍ତେ ଯୋଗୀ ତାହା ନିବାରଣ କରି କହିଲେ, "ହେ, ମହାରାଣା ! ହେ ଭୀମସିଂହ ମହାରାଜ ! ଦୁରାତ୍ମା ବସନ୍ତ ଭଟ୍ଟର ବଚନ ଶ୍ରବଣକରି ଯୁଦ୍ଧର ସକଳ ଆୟୋଜନ ବନ୍ଦ କରିଅଛ । ଅଲ୍ଲାଉଦ୍ଦୀନ ଅଭିଯାନକରି ଏଠାରୁ ଏକବିଂଶ କ୍ରୋଶ ଦୂରରେ ଅଛନ୍ତି । ଦୁଇ ତିନି ଦିନରେ ଚିତୋର ଅମ୍ବପ୍ରତି ଚଢାଉ କରିବେ । ତୁମ୍ଭେମାନେ ଏବେ ସୁଖ ନିଦ୍ରା ତ୍ୟାଗ କର" । ସାଧାରଣରେ ଭୀମ ସିଂହ ଯେ କୌଣସି ଅବସ୍ଥାରେ ମଧ୍ୟ ମନୋଧୈର୍ଯ୍ୟ ତ୍ୟାଗ କରନ୍ତିନାହିଁ । ସେ କହିଲେ, "ହେ, ସଭ୍ୟବୃନ୍ଦ ! ଚିଦାନନ୍ଦ ସ୍ୱାମୀଙ୍କ କଥା ସତ୍ୟ । ସେ ଯଥାର୍ଥ କଥା ନଜାଣିଲେ ଅମ୍ଭଙ୍କୁ ଏପ୍ରକାର କହନ୍ତେ ନାହିଁ । ତୁମ୍ଭେମାନେ କିଛି ଶଙ୍କା ନକରି ଏହି ମୁହୂର୍ତ୍ତ ଅବଧି ସମୟୋଚିତ ବନ୍ଦୋବସ୍ତ କର" । ତତ୍ପରେ ଯୋଗୀ ରାଜପୁତମାନଙ୍କୁ ନିମ୍ନମତେ ପ୍ରୋତ୍ସାହିତ କଲେ;—"ହେ, ରାଜପୁତମାନେ ! ତୁମ୍ଭେମାନେ ସୂର୍ଯ୍ୟ ଓ ଚନ୍ଦ୍ର ବଂଶୀୟ, ନିଜର ପ୍ରତାପ ଦର୍ଶା-ଇବାଲାଗି ଉତ୍ତମ ଅବସର ମିଳିଅଛି । ସ୍ୱଜାତି ଓ ସ୍ୱରାଜ୍ୟ ପ୍ରତି ଅଭିମାନଥିଲେ ନିଜର ପବିତ୍ର ଜୀବନରେ ଆଶା ନରଖି ଯୁଦ୍ଧକର । ଜାତ୍ୟଭିମାନ ଓ ଦେଶା-ଭିମାନ ତ୍ୟାଗକରି, ଦେବାଳୟ ବିନଷ୍ଟକାରୀ ଓ ପୂଜ୍ୟ ଗୋବ୍ରାହ୍ମଣ ହନ୍ତାକ ମହମ୍ମଦୀୟମାନଙ୍କୁ ତୁମ୍ଭ ଚିତୋର ମାତୃଭୂମି ସମର୍ପଣ କରିବାକୁ ଇଚ୍ଛାଥିଲେ ତୁନିହୁଅ ।" ରାଜପୁତମାନେ ଉତ୍ତେଜିତ ହୋଇ ଏକ ସ୍ୱରରେ କହିଲେ "ସ୍ୱଦେଶ ଓ ସ୍ୱରାଜ୍ୟପାଇଁ ଆମ୍ଭେମାନେ ଅବଶ୍ୟ ପ୍ରାଣଦାନ କରିବୁଁ, ଏବଂ ଏହି ପଣରଖି ଯୁଦ୍ଧରେ ପ୍ରବେଶ କରିବୁଁ ।" ରାଜା ଲକ୍ଷ୍ମଣ ସିଂହ ଓ ଭୀମ ସିଂହ ରାଜପୁତ ଶୂରମାନଙ୍କୁ ପ୍ରଶଂସା କରି ଓ ସେମାନଙ୍କୁ ଅଧିକତର ପ୍ରୋତ୍ସାହିତକରି ଅନ୍ତଃପୁରକୁ ପ୍ରସ୍ଥାନ କଲେ ।



Digitized by srujanika@gmail.com



## ତ୍ରୟୋଦଶ ଅଧ୍ୟାୟ ।



"ହେମଲତା ! ହେମଲତା ! ଏଣେ ଆସ" ବୋଲି ଘରଭିତରୁ ଜଣେ ପରିଚିତ ଲୋକର କଣ୍ଠଧ୍ୱନି ଶୁଣି ହେବାମାତ୍ରେ ହେମଲତା ଦାଣ୍ଡ ପିଣ୍ଡାରୁ ଭିତରକୁ ଦଉଡିଯାଇ ଶିବପ୍ରସାଦଙ୍କ ନିକଟବର୍ତ୍ତୀ ହୋଇ "ବାବୁ ! କାହିଁକି ଡାକିଲ" ବୋଲି ପଚାରିଲେ । ଶିବପ୍ରସାଦ ତାହାଙ୍କୁ ଦେଖି କହିଲେ, "ମା ! ଚକ୍ରବର୍ତ୍ତୀ ଚିତୋର ଦେଶ ପ୍ରତି ଅଭିଯାନ କରିବାଲାଗି ନାନାପ୍ରଦେଶରୁ ସୈନ୍ୟ ସଂଗ୍ରହକରି ଆଣାଉ ଅଛନ୍ତି । ଅତଏବ ଦୂର୍ମାର୍ଗ ଗାମୀ ରାଜସେବକମାନେ ଆମ୍ଭ ଗ୍ରାମ ଦେଇ ଯାଉଅଛନ୍ତି । ତୁ ସେମାନଙ୍କ ଦୃଷ୍ଟିରେ ପଡିବୁନାହିଁ । ସେ ମହାତ୍ମା ତତ୍ତ୍ୱ ସମର୍ପଣ କରି ଯାଇଅଛନ୍ତି । ମୁ ପୁନର୍ପି ତତେ ତାହାଙ୍କୁ ସମର୍ପଣ କରିବା କର୍ତ୍ତବ୍ୟ । ତୁ ଦାଣ୍ଡକୁ ଯାଅନାହିଁ ।" ଏହିରୂପ ଅନେକ ହିତୋପଦେଶ ଦେଲେ । ହେମ ଏହି ଉପଦେଶ ଶ୍ରବଣକରି କହିଲେ, "ଦାଣ୍ଡରେ ଜଣେ ଭିକ୍ଷୁକ ଗାୟନ କରୁଥିଲା । ତାହାର ଗାନ ଶୁଣିବାକୁ ଯାଇଥିଲି । ହେଉଟି, ସେହି ଭିକ୍ଷୁକ ଆମ୍ଭ ଘର ଆଡକୁ ଆସୁଅଛି ।" ହେମଲତା ପାଲି ଗ୍ରାମରେ ରହିମାନ-ଖାନର ଦୌର୍ଜନ୍ୟହେତୁ ମୂର୍ଚ୍ଛିତା ହେବା ସମୟରେ, ତତ୍ପୂର୍ବେ ଜ୍ୱର ପୀଡିତ ଥିବା-ବେଳେ ଔଷଧ ସେବନ କରାଇ ରକ୍ଷରେଖା ବାନ୍ଧିଥିବା ଗୋସାଇଁ, ତାହାଙ୍କୁ ଧୀରେ ଧୀରେ ବାହାରକୁ ନେଇଯାଇ ଗୋଟିଏ ଶଗଡରେ ବସାଇ କଲ୍ୟାଣମଲ୍ଲଙ୍କ ଗ୍ରାମକୁ ଘେନିଯାଇ, ସେହି ଗ୍ରାମ ନିବାସୀ ତାହାଙ୍କ ପରମ ମିତ୍ର ଶିବପ୍ରସାଦଙ୍କୁ, ସେହି କନ୍ୟାଟିକୁ ସମର୍ପଣକରି ଅତ୍ୟନ୍ତ ଜାଗ୍ରତରେ ରଖିବାକୁ କହି, ସେ ନିଜେ କ୍ଷମା ମଦନ ସିଂହ ଆସିବା ପର୍ଯ୍ୟନ୍ତ ତାହାକୁ ନଛାଡିବାକୁ ଆଦେଶଦେଇ ବାହାରି

Digitized by srujanika@gmail.com

ଗଲେ । ଶିବପ୍ରସାଦ ପଣ୍ଡିତ ସମ୍ପ୍ରଦାୟର ଜଣେ ଶାସନୀୟ ବ୍ରାହ୍ମଣ । ଧନୀ ଓ ବଡ଼ଲୋକ ପୁରୁଷ ଧର୍ମକାର୍ଯ୍ୟ କରିବାରେ ପ୍ରଚୁର ଧନ ବ୍ୟୟକରି ସଙ୍କୀର୍ତ୍ତିବନ୍ତ ହେବା ଯୋଗୁଁ ହେମଲତା ତାହାଙ୍କ ଘରେ ନିରାପଦରେ ରହିଥିଲେ । କିନ୍ତୁ ପିତୃସମ ପିତାମହ କାରାଗୃହବାସୀ ହେବାରୁ ଏବଂ ମାତା, ପିତା, ଭ୍ରାତୃ କିମ୍ବା ଅନ୍ୟ ଆତ୍ମୀୟ-ବିହୀନ ହେବାଯୋଗୁଁ ସେ ସର୍ବଦା ଚିନ୍ତାଗ୍ରସ୍ତ ହୋଇ କ୍ଷୀଣ ଶରୀରା ହୋଇଥିଲେ । ତାହାଙ୍କୁ ସାନ୍ତ୍ୱନା ଦେବାକୁ ଶିବପ୍ରସାଦଙ୍କ କନ୍ୟା ଚନ୍ଦ୍ରାବତୀ ଅନେକ ଚେଷ୍ଟା କରୁଥିଲେ । କିନ୍ତୁ ସେହି ଯତ୍ନ ସବୁ ବିଫଳ ହେଉଥିଲା । ଚନ୍ଦ୍ରାବତୀର ପତି ଭିକ୍ଷାଳକୁ ଦୁଇବର୍ଷ ପୂର୍ବେ ଦେଶାନ୍ତରକୁ ଯାଇ ଫେରି ନଥିବାରୁ, ଶରୀର ଓ ଦୁଃଖ ଭାରାକ୍ରାନ୍ତ ହୋଇ ସମଦୁଃଖିନୀ ହେମଲତାକୁ ଆଶ୍ୱାସ କରିବାକୁ ସର୍ବଦା ଚେଷ୍ଟାକରି ତଦ୍ଦ୍ୱାରା ନିଜେ ଆଶ୍ୱାସିତ ହେଉଥିଲେ । କାଳ ସକଳ ଦୁଃଖ ଉପଶମ କରେ । ଅତଏବ କ୍ରମଶଃ ହେମଲତା ଚନ୍ଦ୍ରାବତୀର ମଧୁରାଳାପ ଦ୍ୱାରା କେତେକ ପରିମାଣରେ ଆଶ୍ୱାସିତ ହୋଇଥିଲେ । ଏହିପରି କେତେଦିନ ଅତିବାହିତ ହେଲା । ଉପରୋକ୍ତ ଦିନ ସୁଶ୍ରାବ୍ୟ ସ୍ୱର ଗୀତ ଗାନ କରୁଥିବା ଭିକ୍ଷୁକ ଶିବପ୍ରସାଦ ଘରଠାକୁ ଆସନ୍ତେ ହେମଲତାର ଗାନ ହୃଦୟରେ ପ୍ରବେଶ ଥିବାରୁ ଭିକ୍ଷୁକର ଗାନ ଶ୍ରବଣକରି ସନ୍ତୋଷ ଲଭି ତାହାକୁ ପ୍ରଚୁର ପରିମାଣରେ ଭିକ୍ଷା ଦାନକଲେ । କୌଣସି କାରଣରୁ ସେହି ନିର୍ବୋଧ ଭିକ୍ଷୁକ ହେମଲତାକୁ ଆପାଦମସ୍ତକ ନିରୀକ୍ଷଣ କରିବାକୁ ଲାଗିଲା । ସେହି ନିର୍ବୋଧର ବିକୃତ ଦୃଷ୍ଟିକୁ ଡରି ହେମ ଶୀଘ୍ର ଭିକ୍ଷାଦେଇ ଭିତରକୁଯାଇ ଚନ୍ଦ୍ରାବତୀକୁ ଜଣାଇଲା । ମାତ୍ର ଚନ୍ଦ୍ରାବତୀ ଦ୍ୱାରମୁହଁକୁ ଆସିବା ବେଳକୁ ସେ ବାହାରି ଯାଇଥିଲା ।

ଏହି ଘଟଣାର କେତେକ ଦିନ ଉତ୍ତାରୁ ଏକଦା ହେମଲତା ଘରେ ଧୂପ ଲଗାଇବା ଉତ୍ତାରୁ ମଦନସିଂହଙ୍କ ବିଷୟ ସ୍ମରଣକରି ତାହାଙ୍କ ସଙ୍ଗ ଲଭିବା ଦୁର୍ଲଭ ବୋଲି ଭାବନା କରୁଅଛନ୍ତି—ଏମନ୍ତ ସମୟରେ ଶିବପ୍ରସାଦ ଜଣେ ସେବକକୁ ସଙ୍ଗେ ଘେନି ଘରକୁ ଆସିଲେ । ଚନ୍ଦ୍ରାବତୀ ଓ ହେମଲତାକୁ ପାର୍ଶ୍ୱରେ ବସାଇ ସେବକକୁ ସକଳ ବୃତ୍ତାନ୍ତ ଜଣାଇବାକୁ କହିଲେ । ସେ କହିଲା, "ବାବା ! ତୁମ୍ଭ ନନ୍ଦନ ହେମଲତା ଅଛି ବୋଲି ଜାଣି ତାହାଙ୍କୁ ସଙ୍ଗେ ନେବ

ସକାଶେ ମଦନସିଂହ ମତେ ପଠାଇ ଅଛନ୍ତି । ବିବାହ ବିଷୟ ସର୍ବସିଦ୍ଧ ହୋଇ-ଅଛି । ଚିତୋର ରାଜା ଭୀମସିଂହ ଏହାଙ୍କୁ ନେବାପାଇଁ ସବାର, ବାର ଜଣ ଭୋଇ ଓ ଦୁଇଜଣ ଚପରାସିଙ୍କୁ ମୋହ ସହିତ ପଠାଇ ଅଛନ୍ତି । ସମ୍ରାଟ ଓ ରାଜପୁତମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ହେବ, ଏଣୁ ଯଥାସାଧ୍ୟ ଶୀଘ୍ର ଏହାଙ୍କୁ ନେବାପାଇଁ ସେ ଆଦେଶ ଦେଇ ଅଛନ୍ତି । ଏଥକୁ ତୁମ୍ଭ ଇଚ୍ଛା ।" ସେବକର ବଚନାବଳୀ ହେମର ହୃତ୍‌ପଦ୍ମ ବିକଶିତ କଲା । ହେମର ବିଚ୍ଛେଦ ଘଟିବ ବୋଲି ଚନ୍ଦ୍ରାବତୀ ବିଶେଷ ଦୁଃଖିତ ହେଲେ । ଶିବ ପ୍ରସାଦ ଉଦ୍‌ବିଗ୍ନରେ ହେମର ମତ ପଚାରିଲେ । କିନ୍ତୁ ଉତ୍ତର ଦାନରେ ସେ ଅକ୍ଷମ ହେଲେ । ଶିବ ପ୍ରସାଦ ଏହି ବିଷୟ ତାହାଙ୍କ ପତ୍ନୀଙ୍କୁ ଜଣାନ୍ତେ ସେ କୌଣସି ମତ ଦେଇ ନପାରି ସନ୍ଦେହମନା ହେଲେ । ରାତି ଏକ ପ୍ରହର ସମୟରେ ଭୋଇମାନେ ସବାରି ଧରି ଅସି ବାଟ ମୁହଁରେ ବସିଲେ । ଶିବ ପ୍ରସାଦ ସେ ସମସ୍ତଙ୍କୁ ଖାଦ୍ୟ ସାମଗ୍ରୀ ଦେଇ ଶୟନର ବନ୍ଦୋବସ୍ତ କରିଦେଲେ । ଚିତୋର ରାଜ୍ୟକୁ ଯିବାକୁ ହେମଲତାର ଇଚ୍ଛାଥିଲା ପରି ତାହାଙ୍କ କଥାବାର୍ତ୍ତାରୁ ଅନୁମାନ କରି ଚନ୍ଦ୍ରାବତୀ ସେହି କଥା ନିଜ ପିତା ମାତାଙ୍କୁ ଜଣାଇ ଦେଲେ । ହେମଲତାର ପରିଣୟ ବିଷୟରେ କୌଣସି ରୂପ ବିଘ୍ନ ନଘଟାଇବାକୁ ଇଚ୍ଛାକରି, ପ୍ରଥମେ ତାହାଙ୍କୁ ସମର୍ପଣ କରିଥିବା ଯୋଗୀ ସୁଦ୍ଧା ଏହି କନ୍ୟାକୁ ମଦନସିଂହଙ୍କୁ ଦେବାକୁ ଅଭିଳାଷ କରିଥିବା ସ୍ମରଣ କରି ହେମକୁ ଚିତୋର ପଠାଇ ଦେବାକୁ ପତି ପତ୍ନୀ ସ୍ଥିରକଲେ । ତହିଁଅରି ଦିନ ମଧ୍ୟାହ୍ନରେ ସେମାନଙ୍କ ପ୍ରସ୍ଥାନ ନିର୍ଦ୍ଧାରିତ ହେଲା । ଶିବ ପ୍ରସାଦ ଓ ତାହାଙ୍କ ପତ୍ନୀ ହେମକୁ କନ୍ୟାରୂପେ ପରିପାଳନ କରି ଥିବାରୁ ତାହାଙ୍କୁ ବସ୍ତ୍ରାଦି ଅଭରଣ ପୁରସ୍କାର ଦେଲେ । ହେମ ସେମାନଙ୍କୁ ଛାଡି ନପାରି ସାଶ୍ରୁନୟନରେ ଗୃହତ୍ୟାଗ କରି ସବାରିରେ ବସିଲେ । କନ୍ୟାଟିକୁ ଏକାକୀ ବିଦେଶୀଙ୍କ ସହିତ ପଠାଇବା ଅନୁଚିତ ବିବେଚନା କରି "ଲକ୍ଷ୍ମଣ" ନାମଧେୟ ଜଣେ ବୃଦ୍ଧ ଓ ଧୈର୍ଯ୍ୟବାନ ଶୂଦ୍ର ସେବକକୁ ସଙ୍ଗରେ ପଠାଇଲେ ଏବଂ ବସ୍ତି ନଗରଦାଣ୍ଡେ ନଯାଇ ସଳଖେ ଚିତୋର ଯିବାପାଇଁ ବାରମ୍ବାର ଚେତନାଦେଇ ପ୍ରସ୍ଥାନରମ୍ଭ କରିବାକୁ ଭୋଇ-ମାନଙ୍କୁ ଆଦେଶ ଦେଲେ । 'ଲକ୍ଷ୍ମଣ' ସମସ୍ତଙ୍କଠାରୁ ବିଦାୟ ନେଇ ଯାତ୍ରାକଲା । ହେମଲତା ମଦନସିଂହଙ୍କ ସହିତ ସୁଖରେ କାଳଯାପନ କରିବା ଆଶାରେ ଗୃହ

Digitized by srujanika@gmail.com

ତ୍ୟାଗକଲେ । ଲଛମୀ ଜଣେ ବିଶ୍ୱସ୍ତ ଓ ସାହସୀ ଭୃତ୍ୟ । କିନ୍ତୁ ଅତୀବ ନିର୍ବୋଧ ହୋଇଥିବାଯୋଗୁଁ ଯେ ଯାହାକହେ ତହିଁରେ ବିଶ୍ୱାସକରି ସୁଲଭରେ ଭୁଲିଯାଏ । ଏହିହେତୁ ଶିବପ୍ରସାଦ "ସାବଧାନ ସାବଧାନ" ବୋଲି ବାରମ୍ବାର କହିଥିଲେ । ଲଛମୀ ଯଥେଷ୍ଟ ସମୟ ପର୍ଯ୍ୟନ୍ତ ଅପ୍ରମତ୍ତ ଚିତ୍ତରେ ସବାର୍ ପଛରେ ଦଉଡ଼ି ଚାଲିଲା । ସେମାନେ ସାୟଂକାଳରେ 'ଫତିବାଦ୍' ନିକଟରେ ପହୁଞ୍ଚିଲେ । ପଥଶ୍ରମ ନିବାରଣାର୍ଥେ କିଞ୍ଚିତ ମଦ୍ୟପାନ କରିବାଲାଗି ଭୋଇମାନେ ବୃକ୍ଷମୂଳେ ସବାରି ରଖି ଗ୍ରାମଭିତରକୁ ଗଲେ । 'ଲଛମୀ' ସହଗାମି ସେବକଙ୍କୁ ଗଞ୍ଜାଇ ଖାଇବାର ଦେଖି ସମ୍ଭାଳି ନପାରି ନିଜେ ଦୁଇଦମ୍ ଗଞ୍ଜାଇ ଟିକିଦେଲା । କିୟତ୍‌କ୍ଷଣ ପରେ ଭୋଇମାନେ ଅସି ପୁନର୍ବି ପ୍ରସ୍ଥାଣ ଅରମ୍ଭକଲେ । ଫତିବାଦଠାରେ ଚିତୋରକୁ ଯିବାପାଇଁ ଭିନ୍ନ ଭିନ୍ନ ମାର୍ଗମାନ ବିଦ୍ୟମାନ । ମାତ୍ର ଭୋଇମାନେ ବାଟବଣା ନହୋଇ ତ୍ୱରିତେ ଦିଲ୍ଲୀ ନଗରାଭିମୁଖରେ ଯାତ୍ରାକଲେ । ଲଛମୀ ସେହି ମାର୍ଗ ତ୍ୟାଗକରାଇ ଚିତୋର ମାର୍ଗ ଅବଲମ୍ବନ କରାଇବାକୁ ଚେଷ୍ଟା କଲା । କିନ୍ତୁ ଗଞ୍ଜାଇ ନିଶାରେ ମତ୍ତ ହୋଇ ସହଗାମିଙ୍କ ସଙ୍ଗେ ଅମୋଦ ପ୍ରମୋଦରେ ନାନା-ବିଧ ଗୀତ ଗାନ କରି ଯାଉଥିବାରୁ ତାହାର ଚେଷ୍ଟାଚୟ ବିଫଳ ହେଲା । ମଦ୍ୟପାନରେ ପ୍ରମତ୍ତହୋଇ ଭୋଇମାନେ ଶୀଘ୍ରତର ଗମନ କଲେ । ରାତ୍ର ଏକ-ପ୍ରହର ସମୟରେ ସେମାନେ ଦିଲ୍ଲୀ ନଗରରେ ପହୁଞ୍ଚିଲେ । ନଗର ପ୍ରଥମ ଦ୍ୱାର ଅତିକ୍ରମ କରି ଦୁଇ ଚାରି ପହଣ୍ଡ ଯାଇଅଛନ୍ତି—ଏମନ୍ତ ସମୟରେ ଦୀପ-ସ୍ତମ୍ଭ ନିମ୍ନରେ ଦଣ୍ଡାୟମାନ କମ୍ବଳାବୃତ ଜଣେ ପୁରୁଷ ଭୋଇମାନଙ୍କୁ ଦେଖି "ଅରେ, ଏ ଅଡ଼େ ଏ ଅଡେ" ବୋଲି ବାଟଦେଖାଇଲା । ସେହି ସଙ୍କେତ ବୁଝିପାରି ଭୋଇମାନେ ରାଜଦାଣ୍ଡ ତ୍ୟାଗକରି ଗଳୀ ଉପଗଳୀ ଦେଇ ଯିବାର ଅରମ୍ଭ କଲେ । ଲଛମୀ ଏହାଦେଖି ଗଞ୍ଜାଇ ନିଶାହେତୁ ନିର୍ବୋଧ ପାଲିକି ନିକଟକୁ ଯାଇ "ଚିତୋର ଅସିଲେ, ଚେତା ହୁଅ" ବୋଲି ହେମଲତାକୁ ଉଠାଇଲା । ମଦନ ସିଂହଙ୍କ ଦର୍ଶନ ଅଶାରେ ସେହି ନିଦ୍ରିତା ବାଳିକା ଏହି କଥା ଶ୍ରବଣ କରିବା ମାତ୍ରେ ସଜ୍ଞା ପ୍ରାପ୍ତ ହୋଇ କପାଟ ଖୋଲି ପଦାକୁ ଅନାଇ ବସିଲେ । ଭୋଇମାନେ କେତେକ ପଥ ଅତିକ୍ରମ କରି ପରି-ଶେଷରେ ଗୋଟିଏ ଉନ୍ନତ ପ୍ରାକାରବେଷ୍ଟିତ ଦ୍ୱିତଳ ଗୃହ ନିକଟରେ,

Digitized by srujanika@gmail.com

କମ୍ବଳାବୃତ ପୁରୁଷର ସଙ୍କେତାନୁଯାୟୀ ସବାର ରଖିଲେ । ଦେଖେବେଳକୁ ଲବଙ୍ଗୀ ବନ୍ଧାଇ ଦଶାରୁ ପ୍ରାୟ ମୁକ୍ତ ହୋଇ କଷ୍ଟରେ ସଞ୍ଜ୍ଞା ପ୍ରାପ୍ତ ହେଲଣି । ସବାର ଥୋଇବା ମାତ୍ରେ କମ୍ବଳାବୃତ ସେବକ ଅସି କପାଟ ଫିଟାଇ କହିଲା, "ମା ! ସ୍ତ୍ରୀମାନେ ଅପେକ୍ଷା କରି ରହି ଅଛନ୍ତି, ଉଠି ଆସ ।" "ଅନ୍ତଃପୁରସ୍ଥ ଜଣେ ଦାସୀକୁ ସୂଦ୍ଧା ମୋହ ପାଇଁ ପଠାଇ ମୋହର ମନ୍ତ୍ର ରକ୍ଷା କଲେ ନାହିଁ କାହିଁକି ?" ବୋଲି ହେମ ମନେ ମନେ ବିରକ୍ତ ହୋଇ ଧୀରଭାବେ ସବାର ତ୍ୟାଗ କରି ଲବଙ୍ଗୀକୁ ସଙ୍ଗେ ଘେନି ଭିତରକୁ ଗମନ କଲେ । ହେମ ଗୃହରେ ପ୍ରବେଶ କଲା ବେଳକୁ ଗୃହରେ ଗୋଟିଏ ସୂଦ୍ଧା ଅଲୂଅ ଦୃଶ୍ୟ ହେଲା ନାହିଁ । "ଏ କି ମାୟା" ବୋଲି ହେମ ମନେ ମନେ ଭାବନା କରୁଅଛନ୍ତି ଜଣେ ସେବକ ପ୍ରକାଶ କଲା "ଭିତରେ ସ୍ତ୍ରୀମାନେ ଅଛନ୍ତି । ସେମାନେ ଅନ୍ତଃ-ପୁର ବାହିନୀ । ଏଣୁ ଲବଙ୍ଗୀକୁ ସଙ୍ଗେ ନେବାକୁ ହେବ ନାହିଁ ।" ଏହି କଥା ଶୁଣି ହେମ କିଂକର୍ତ୍ତବ୍ୟବିମୂଢ଼ ହୋଇ, "ସାବଧାନ ରହି" ବୋଲି ଲବଙ୍ଗୀକୁ କର୍ଣ୍ଣରେ କହି ଭିତରକୁ ଯାଇ ଗୋଟିଏ ପ୍ରକୋଷ୍ଠରେ ପ୍ରବେଶ କଲେ । ସେହି ପ୍ରକୋଷ୍ଠର କୋଣରେ ଗୋଟିଏ କ୍ଷୁଦ୍ର ଦୀପ ଜଳୁଥିଲା । ସେହି ଅଲୂଅରେ ତଦସ୍ଥ ମନୁଷ୍ୟଙ୍କର ମୁଖକୁ ମାତ୍ର ଦିଶି ହେଉଥିଲା । ସେହି ପ୍ରକୋଷ୍ଠ ମଧ୍ୟରେ ଦୁଇ ଚାରି ପାଦ ଅଗ୍ରସର ହୁଅନ୍ତେ ଅତି ଦୀର୍ଘକାୟ ଓ ଭୀଷଣ ଜଶଦାଢ଼ି ବିଶିଷ୍ଟ ପ୍ରତ୍ୟକ୍ଷ ଯମଦେବ ସ୍ୱରୂପ ରହିମାନ୍ ଖାଁର ବିକଟ କରାଳ ହେମଲତାର ଦୃଷ୍ଟି ଗୋଚର ହେଲା । ଦେଖିବା ମାତ୍ରେ ଆକସ୍ମିକ ଭୀତି ଯୋଗୁଁ ସର୍ବାଙ୍ଗ କମ୍ପ-ମାନ, ବାକ୍ଶକ୍ତିରହିତ ଓ ଅଚେଷ୍ଟ ହୋଇ, "ଲବଙ୍ଗି ! ଲବଙ୍ଗି !" ବୋଲି ଚିତ୍କାର କରି, ହେମଲତା ମୂର୍ଚ୍ଛିତା ଓ ଭୂପତିତା ହେଲେ । ଭୂପତିତା ବନିତାକୁ ସ୍ୱହସ୍ତରେ ଉଠାଇ, "ପ୍ରାଣେଶ୍ୱରି ! ଭୟ କର ନାହିଁ; ମୁଁ ଥିବାଠାରେ ଶଙ୍କା କାହିଁକି ? ଉଠ, ଉଠ" ବୋଲି ରହିମାନ୍ ତାହାଙ୍କୁ କୋଳ କରିବାକୁ ଯତ୍ନ କଲା । କିନ୍ତୁ ଦୁଃଖାବେଗ ହେତୁ ଶରୀର ଜ୍ଞାନଶୂନ୍ୟ ଅବଳାକୁ ମୋହାବେଶ ଯୋଗୁଁ ତସ୍ମାନାବସ୍ଥା ପ୍ରାପ୍ତ ରହିମାନ୍ ଧରି ପାରିଲା ନାହିଁ । ହେମଲତାଠାରେ ସକଳ ମନ ପ୍ରାଣ ଦେଇ ଜଗି ରହିଥିବା ଲବଙ୍ଗୀ ହେମର ଚିତ୍କାର ଶ୍ରବଣ କରି ସେ ବିପଦ୍ଗ୍ରସ୍ତ ହେଲେ ବୋଲି ଅନୁମାନ କରି ଭିତରୁ ରୁଦ୍ଧ କପାଟକୁ ପଦା-

Digitized by srujanika@gmail.com

ଘାତ କଲା । ମାତ୍ର କପାଟ କେହି ନ ଫିଟାଇବାରୁ ଖର ବେଗରେ ଦାଣ୍ଡକୁ ଯାଇ ଉଚ୍ଚୈଃସ୍ୱରରେ "ହେ ଧର୍ମାତ୍ମାମାନେ ! ରକ୍ଷା କର, ରକ୍ଷା କର" ବୋଲି ପାଟି କଲା । ସେତେବେଳକୁ ପ୍ରାୟ ଦେଢ଼ ପ୍ରହର ରାତ୍ରି ହୋଇଥିବାରୁ ସର୍ବସାଧାରଣ ନିଦ୍ରାଗତ ଥିଲେ । କିନ୍ତୁ ଚିତ୍କାର ଶ୍ରବଣରେ ଅନେକ ନିଦ୍ରାଭଙ୍ଗ ହୋଇ, ତାହାକୁ ଆପଦ ପଡ଼ିବାର ଅନୁମାନ କରି, ଶସ୍ତ୍ରହସ୍ତରେ ଶବ୍ଦ ଅନୁସରଣ କରି ଲଛମୀର ବାସ ସ୍ଥାନରେ ସମବେତ ହେଲେ । ସେମାନଙ୍କୁ ଦେଖି ଲଛମୀ କହିଲେ, "ହେ ମହାତ୍ମାମାନେ ! ଏହି ଘରେ ଜଣେ ସ୍ତ୍ରୀକୁ ବନ୍ଦ କରୁ-ଅଛନ୍ତି । କପାଟମାନ ରୁଦ୍ଧ ହୋଇଅଛି । ଆପଣମାନଙ୍କୁ ସେହି ନିରୀହା ଅବଳାକୁ ରକ୍ଷା କରିବାକୁ ହେବ ।" ଏହା ଶୁଣି ସମବେତ ଗ୍ରାମବାସୀମାନେ କ୍ରୋଧାବିଷ୍ଟ ହୋଇ କୁଠାରାଘାତରେ କପାଟ ଭଗ୍ନ କରି ଭିତରେ ପ୍ରବେଶ କଲେ । ଏହି ବ୍ୟାପାର ସନ୍ଦର୍ଶନ କରି ରହିମାନ ଓ ପୂର୍ବ କଥିତ କମଲାବୃତ ଉଷ୍ଣୀଷ (ନନ୍ଦ) ଅଚିରେ ଗୃହରୁ ପଳାୟନ କଲେ । ସ୍ୱର୍ଣ୍ଣ କୁଣ୍ଡଳ ପରି ହେମ-ଲତା ଭୂମିରେ ପଡ଼ିଥିଲେ । ସେ ଚୈତନ୍ୟ ପ୍ରାପ୍ତ ହୋଇ ଉଦ୍ଧ୍ୱ ହେବରୁ ଚକ୍ଷୁ ମୁଦ୍ରିତ କରି "ରେ ବିଧାତା, ରେ ଦୈବ" ବୋଲି ବିଳାପ କରିବାକୁ ଲାଗିଲେ । କିନ୍ତୁ ଗ୍ରାମବାସୀମାନେ ତାହାଙ୍କୁ ଉଠାଇ "ସେହି ଦୁରାତ୍ମାମାନେ ଆଉ ଏଠାରେ ନାହାନ୍ତି" "ଭୟ କର ନାହିଁ" ବୋଲି ତାହାଙ୍କୁ ଧୈର୍ଯ୍ୟ ପ୍ରଦାନ କଲେ । ଆଗନ୍ତୁକ ବ୍ୟକ୍ତିଙ୍କ ମଧ୍ୟରେ ଚକ୍ରବର୍ତ୍ତୀଙ୍କ ପ୍ରଧାନ କର୍ମଚାରୀ ଚନ୍ଦ୍ରସେନ ନାମଧେୟ ଜଣେ—ବଙ୍ଗଦେଶୀୟ କ୍ଷତ୍ରିୟ ଥିଲେ । ସେ ପଞ୍ଚାଶବର୍ଷ ବୟଃପ୍ରାପ୍ତ ଏବଂ ପ୍ରାଣୀମାନଙ୍କ ଦୁଃଖ ସୁଖ ଜାଣିବା ବ୍ୟକ୍ତି ହୋଇଥିବାରୁ ଏହି ନିଃସହାୟ କନ୍ୟା ପ୍ରତି କରୁଣାର୍ଦ୍ର ହୋଇ ଲଛମୀ ସହିତ ତାହାଙ୍କୁ ନିଜ ଘରକୁ ନେଇ ଗଲେ । ସମବେତ ସମସ୍ତ ଲୋକେ ରହିମାନଖାଁଙ୍କୁ ନିନ୍ଦା କରି ଯେ ଯାହା ଘରକୁ ପ୍ରତ୍ୟାଗମନ କଲେ । ଉପରୋକ୍ତ ଘର ବାହାର ବୃକ୍ଷମୂଳେ ଲୁଚି ରହିଥିବା ରହିମାନ ଓ ନନ୍ଦ ଜନ ଗହଳ ତୁଟି ଯିବାରୁ ପୁନର୍ବାର ଘରକୁ ଫେରି ଆସିଲେ । ରହିମାନ ଦୁଇଥର ନିଜ ମନୋରଥ ସାଧନରେ ଅକୃତକାର୍ଯ୍ୟ ହୋଇଥିବାରୁ ବିଶେଷ ଚିନ୍ତିତ ହୋଇ ନନ୍ଦକୁ ଡକାଇ କହିଲେ, "ନନ୍ଦ, ବାପ, ତୁ ବାଉଳା ବେଶ ଧାରଣ କରି ନାନା ଗ୍ରାମ ବୁଲି ବୁଲି ହେମଲତାର ଠିକଣା ସ୍ଥିର

Digitized by srujanika@gmail.com

କର ଅଦ୍ୟ ମୋହର ମନୋପକାର ସାଧନ କରୁଅଛୁ । ମଦନ ସିଂହ ନାମ ଧରି ସେହି କନ୍ୟାକୁ ବହୁକଷ୍ଟରେ ଆଣାଇଲି, କିନ୍ତୁ ମୋହର ମନୋରଥ ସଫଳ ହୋଇ ପାରିଲା ନାହିଁ । କର୍ମ ଦୋଷକୁ ମୋହର ଗୁପ୍ତଚର ଶ୍ରମ ଫଳବତୀ ହେଲା ନାହିଁ ।" ଏହିମତେ ନାନା କଥା କହି ଦୀର୍ଘ ନିଶ୍ୱାସ ପକାଇ ସେହି ବୃଦ୍ଧ ଯାତ୍ରୀଙ୍କର ନିଜ ସମଭିବ୍ୟାହାରରେ ପ୍ରସ୍ଥାନ କଲା ।

ଏଣେ ଚନ୍ଦ୍ରସେନ ହେମଲତାକୁ ଘରକୁ ନେଇ ଭୋଜନ କରାଇ କହିଲେ, "ମା ! ତୁ ଜଣେ କ୍ଷତ୍ରିୟ କନ୍ୟା ବୋଲି କହୁଅଛୁ । ଏଣୁ ତୁ ଆମ୍ଭ ଘରଠାରେ ଥାଅ । ଦୁଇ ଚାରି ଦିନରେ ଆମ୍ଭ ଚକ୍ରବର୍ତ୍ତୀ ଚିତୋର ଦେଶ ଯୁଦ୍ଧ ଦଣ୍ଡଯାତ୍ରା କରି ଯିବେ । ମୋତେ ତାହାଙ୍କ ସହିତ ସଙ୍ଗ୍ରାମେ ଯିବାକୁ ହେବ । ତୁ ସେଠାକୁ ଯିବାକୁ ଇଚ୍ଛା କଲେ ମୋହ ସହିତ ନେଇ ଯିବି । ନଚେତ୍ ତୋତେ କାହାକୁ ସମର୍ପଣ କରିଯିବି କିଛି ସ୍ଥିର କରି ପାରୁନାହିଁ ।" ଚନ୍ଦ୍ରସେନଙ୍କ କଥା ଶୁଣି ହେମଲତା କହିଲା, "ଅବଧାନ, ମୁଁ ଚିତୋର ଯିବାକୁ ଇଚ୍ଛା କରୁଅଛି ।" ଲଛମୀ ତେଣ ପାଞ୍ଚ ଛଅ ଦିନ ମାତ୍ର ଚନ୍ଦ୍ରସେନଙ୍କ ଗୃହରେ ରହି ଜୁଲିଆ ନଗରକୁ ପ୍ରତ୍ୟାବୃତ୍ତ ହେଲା ଓ ଶିବ ପ୍ରସାଦଙ୍କୁ ସକଳ ବୃତ୍ତାନ୍ତ ଜଣାଇଲା ।



## ଚତୁର୍ଦ୍ଦଶ ଅଧ୍ୟାୟ



ଦିଲ୍ଲୀ ଚକ୍ରବର୍ତ୍ତୀ ବହୁସଂଖ୍ୟ ସେନା ସମଭିବ୍ୟାହାରରେ ରାଜସ୍ଥାନକୁ ଦଣ୍ଡ ଯାତ୍ରା କଲେ । ସେହି ମହା ସୈନ୍ୟସାଗର ହିନ୍ଦୁ, ପିଣ୍ଡାର, ଜାଠ, ବୌଦ୍ଧ, ଜୈନ ପ୍ରଭୃତି ସ୍ୱଦେଶୀୟ ଏବଂ ଆରବ, ପାରଶିକ, ତୁରସ୍କ, ଅଫଗାନ୍, ଆବସିନିଆ, ତାତାର, ମୋଗଲ ପ୍ରଭୃତି ବିଦେଶୀୟ ଲୋକରେ ପରିପୂର୍ଣ୍ଣ ହୋଇଥିବାରୁ ପ୍ରସ୍ଥାନ କାଳରେ ଚଳନ୍ତ ନଗର ପରି ଶୋଭା ପାଉଥିଲା । ବସ୍ତୁତ

Digitized by srujanika@gmail.com

ଶିକ୍ଷା ଓ ସାମଗ୍ରିକ ଅନୁସନ୍ଧାନ ଅଭାବରୁ ସେହି ସେନା ମଧ୍ୟରେ, ଥୋକେ ଯଥାର୍ଥ ସୈନିକ, ଏବଂ ଅନେକ ଅନୁଚର ବର୍ଗ ଓ ଅନଭିଜ୍ଞ ଦେଖାଯାଉ ମିଳିଥିଲେ । ରଣ ଦୁନ୍ଦୁଭି ବାଜଣାର ଦିଗନ୍ତ ବ୍ୟାପୀ ଧ୍ୱନି ଓ ପ୍ରତିଧ୍ୱନି ଉଠୁଥିଲା । ଜମ୍ବୁ ଦୀକ୍ଷାଧାର ଶତ୍ରୁମାନେ ହସ୍ତସ୍ଥିତ ସୁତୀକ୍ଷ୍ଣ ଖଡ୍ଗମାନ ଦୋହଲାଇ, ଉଲ୍ଲୋ-ଳରେ ନଭୋମଣ୍ଡଳ ଚଳିତକରି, ଅଗ୍ରଗାମୀ ହୋଇ ସେହି ବିରାଟ ସେନାର ମୁଖ ଉଜ୍ଜ୍ୱଳ କରୁଥିଲେ । ସେମାନଙ୍କ ପଶ୍ଚାତ ଭାଗରେ ପାରଶିକ ତୁରଙ୍ଗା-ରୋହଣ ପୂର୍ବକ ହସ୍ତରେ ସୁଦୀର୍ଘ ବର୍ଚ୍ଛା ଧାରଣକରି ଅଶ୍ୱାରୋହୀ ସୈନ୍ୟ ସମୂହ ଗମନ କରୁଥିଲେ । ସେମାନଙ୍କ ପୃଷ୍ଠ ଦେଶରେ ସୈନ୍ୟ ସମୂହର ଶାସନ-କର୍ତ୍ତା ଦିଲ୍ଲୀଶ୍ୱର ଶ୍ରୀ ଅଲାଉଦ୍ଦୀନ ଚକ୍ରବର୍ତ୍ତୀ ସୁବର୍ଣ୍ଣ ଓ ରୌପ୍ୟାଦି ନିର୍ମିତ ଅମାରୀ ବସି, ପ୍ରମତ୍ତ ଗଜେନ୍ଦ୍ର ପୃଷ୍ଠରେ ନୀଳପଟ୍ଟ ବସ୍ତ୍ର ବିନିର୍ମିତ ଓ ଅମୂଲ୍ୟ ରତ୍ନାଦି ଖଚିତ ଆସନରେ ବିରାଜମାନ କରିଥିଲେ । ଚକ୍ରବର୍ତ୍ତୀଙ୍କ ଉଭୟ ପାର୍ଶ୍ୱରେ ମହାମାତ୍ୟ ସାମନ୍ତମାନେ କୃତାନ୍ତକଳ୍ପ ତୁଲ୍ୟ ମଣି ଚକ୍ରବର୍ତ୍ତୀଙ୍କ ଅଙ୍ଗ ରକ୍ଷା କରୁଥିଲେ । ସେମାନଙ୍କ ପଛୁଁଭେ ରାଜାନୁଚରମାନେ; ତାଙ୍କ ପଛରେ ହସ୍ତୀ, ପାଲଙ୍କୀ, ସବାର ଇତ୍ୟାଦିରେ ବସି ଚକ୍ରବର୍ତ୍ତୀଙ୍କ ଅନ୍ୟାନ୍ୟ ମ୍ଳେଚ୍ଛ ରାଜାମାନଙ୍କ ଓ ସେନା ନାୟକମାନଙ୍କ ଅନ୍ତଃପୁର ସ୍ତ୍ରୀମାନେ ପ୍ରସ୍ଥାନ କରୁଥିଲେ । ଏହି ଶ୍ରେଣୀରେ ଚନ୍ଦ୍ରସେନଙ୍କ କୁଟୁମ୍ବ ସହ ହେମଲତା ଗୋଟିଏ ସବାରରେ ବସିଥିଲେ । ଚନ୍ଦ୍ରସେନଙ୍କ ପତ୍ନୀ ହେମଙ୍କୁ ନିଜ ସହୋଦରା ପରି ପାଳନ କରୁ-ଥିଲେ । ଗଡ଼ କାଳରେ ସୈନିକଙ୍କ କୋଳାହଳ, ଘୋଟକଗଣଙ୍କ ହେ୍ରାରବ, ଗଜେଶ୍ୱରମାନଙ୍କ ବୃଂହିତ ଓ ପାଲିକି ବାହାକଙ୍କ ହୁଁକାର ଧ୍ୱନି ବ୍ରହ୍ମାଣ୍ଡ କମ୍ପାଉ ଥିଲା । ସୈନ୍ୟ ଚତୋରନଗରକୁ ପନ୍ଦରକୋଶ ଦୂରରେ ପହୁଞ୍ଚିବାକ୍ଷଣି ଚକ୍ରବର୍ତ୍ତୀ ଏହି ଆଦେଶ ଦେଲେ ଯେ, ଶତ୍ରୁପକ୍ଷ ଆମ୍ଭ ଆଗମନ ବାର୍ତ୍ତା ନଜା-ଣିବା ସକାଶେ ଏଣିକି ସେନାଗଣ ନିଃଶବ୍ଦରେ ଚାଲନ୍ତୁ; ରଣ ଦୁନ୍ଦୁଭି ବନ୍ଦ ହେଉ ।

ଚକ୍ରବର୍ତ୍ତୀଙ୍କ ଆଗମନ ବାର୍ତ୍ତା କଉନ୍ତର ଭ୍ରମଣକାରୀ ସଦାନନ୍ଦ ଯୋଗୀ ଇତିପୂର୍ବେ ଚତୋର ପତିଙ୍କୁ ଜଣାଇ ଅଛନ୍ତି । ତାହାଙ୍କ ଆଗମନ ଓ

ସୈନ୍ୟର ଅବସ୍ଥା ବିଷୟ ବୁଝି ଆସିବା ସକାଶେ ଭୀମ ସିଂହ ମହାତ୍ମା ମଦନ ସିଂହଙ୍କୁ ପଠାଇ ଥିଲେ । ସେ ଯାଇ ଦେଖି ରାଣାଙ୍କୁ ଓ ଭୀମ ସିଂହଙ୍କୁ ସକଳ ବୃତ୍ତାନ୍ତ ଜଣାଇଲେ । ତେବେ ରାଜପୁତ୍ରମାନେ ଚିତୋର ରକ୍ଷା କରିବା ପାଇଁ ପ୍ରାଣପଣେ ଚେଷ୍ଟା କରିବାକୁ ଲାଗିଲେ ।

ପ୍ରବଳ ପ୍ରତାପାନ୍ୱିତ ଗୋରା ସିଂହ ଓ ପ୍ରତାପ ସିଂହ ରାଜପୁତ୍ର ସୈନ୍ୟର ସେନାଧିପତି ନିଯୁକ୍ତ ହେଲେ । ମଦନ ସିଂହ ଓ ଭୀମ ସିଂହ ରାଣାଙ୍କ ଶ୍ରୀଅଙ୍ଗ-ରକ୍ଷକ ହେଲେ । ବୀର ଚୂଡାମଣି ପ୍ରତାପ ସିଂହ ରାଜପୁତ୍ର ସୈନ୍ୟ ସୁସଜ୍ଜିତ କରାଇଲେ । ତୁରସ୍କ ସେନା କ୍ରମଶଃ ଚିତୋର ଗଡ଼ ନିକଟରେ ପହଞ୍ଚିଲା । ଏହି ବାର୍ତ୍ତା ପାଇ ନଗର ରକ୍ଷା କରିବାକୁ ପ୍ରତାପ ସିଂହ ନିଜ ସୈନ୍ୟକୁ ଆଜ୍ଞା ଦେଲେ — ଅଲାଉଦ୍ଦୀନ ଚକ୍ରବର୍ତ୍ତୀ ଗଡ଼ ବେଷ୍ଟନ କଲେ ଏବଂ ନୂତନରେ ଅସ୍ତ୍ରବିଦ୍ୟା ଓ ରଣ କାର୍ଯ୍ୟ ପରିଚାଳନାରେ ଉପଦେଶ ପ୍ରବୀଣ ହୋଇଥିବା ରହ-ମାନ୍ ଖାଁଙ୍କୁ ସେନାଧିପତ୍ୟ ପ୍ରଦାନ କଲେ । ରହମାନଙ୍କ ଭଳି ଭୀରୁ ପୁରୁଷ ଓ ଅସ୍ତ୍ରଧାରଣ କରି ଜାଣେ ନାହିଁ । କିନ୍ତୁ ଗୌରବାର୍ଥେ ଏହି ମହତ୍ କାର୍ଯ୍ୟ କରିବାକୁ ସ୍ୱୀକୃତ ହେଲା । ଚିତୋର ଗଡର ପ୍ରାକାର ୨୨ ଫୁଟ ଉଚ୍ଚ ଓ ୫ ଫୁଟ ବହଳ । ପ୍ରାକାର ଚତୁଃପାର୍ଶ୍ୱରେ ଅଗାଧ ଖଲୀ ବିଦ୍ୟମାନ । ଏହି ଖଲୀ ପାର ହେବା ସକାଶେ ଗୋଟିଏ ଭାସମାନ ଷଙ୍ଗ (floating bridge) ଥିଲା । ଗଡ ଆକ୍ରମଣ ଆରମ୍ଭ ହେବା ମାତ୍ରେ ମହମ୍ମଦୀୟମାନେ ତୋପ ଦାଗି ପ୍ରାକାର ଉତ୍ପାଟନ କରିବାକୁ ଚେଷ୍ଟା କଲେ, କିନ୍ତୁ ସେମାନଙ୍କ ଚେଷ୍ଟାଚୟ ବିଫଳ ହେଲା । ସୈନ୍ୟ ପରେ ସୈନ୍ୟ ଅଗ୍ରସର ହୋଇ ପ୍ରାକାର ଉପରକୁ ଉଠିବାର ଯତ୍ନ କଲେ ମାତ୍ର ରାଜପୁତ୍ରମାନଙ୍କ ଶସ୍ତ୍ରଘାତରେ ପ୍ରାଣତ୍ୟାଗ କଲେ । ପରେ ମ୍ଲେଚ୍ଛମାନେ ସାହସ କରି ଗଡ ଭିତରେ ପ୍ରବେଶ କରିବାକୁ ବାହାରିଲେ କିନ୍ତୁ ପ୍ରାକାର ଉପରିଭାଗରୁ ରାଜପୁତ୍ରମାନେ ଅଗ୍ନି, ତପ୍ତ ତୈଳ, ପ୍ରସ୍ତର ଇତ୍ୟାଦି ବର୍ଷଣ କରି ତୁରସ୍କମାନଙ୍କୁ ଯମାଳୟକୁ ପ୍ରେରଣ କଲେ । ମହମ୍ମଦୀୟ-ମାନେ ବହୁବିଧ ଯତ୍ନ କଲେ ସୁଦ୍ଧା ଗଡ ସ୍ୱାଧୀନ କରି ନପାରିବା ଓ ନିଜ ସୈନ୍ୟ ଅଶେଷରୂପେ ବିନାଶ ହେବାରୁ ଚକ୍ରବର୍ତ୍ତୀ ସନ୍ଦର୍ଶନ କରି ଅତ୍ୟନ୍ତ ଦୁଃଖିତ ହେଲେ । ଦୀର୍ଘକାଳବ୍ୟାପୀ ନଗର ବେଷ୍ଟନ ଦ୍ୱାରା କୌଣସି ଫଳ ନହେବାରୁ

Digitized by srujanika@gmail.com

ଉଭୟ ପକ୍ଷର ସୈନ୍ୟ ଶ୍ରାନ୍ତ ହୋଇ ଯେ କୌଣସି ଉପାୟରେ ତାହା ନିବାରଣ କରିବାକୁ ଇଚ୍ଛା କଲେ । ଅଲ୍ଲାଉଦ୍ଦୀନ ସନ୍ଧି କରିବାକୁ ଇଚ୍ଛୁକ ଥିଲେ ହେଁ ରାଜପୁତମାନେ ପ୍ରଥମେ ସନ୍ଧି କରିବାକୁ ଇଚ୍ଛା କଲେ ନାହିଁ । ପ୍ରଥମେ ସନ୍ଧି ପ୍ରାର୍ଥନା କରିବା ଅପମାନ ବିବେଚନା କରି ଚକ୍ରବର୍ତ୍ତୀ ତଦ୍ବିଷୟରେ ପଶ୍ଚାତ୍‌ପଦ ହୋଇଥିଲେ ଏବଂ ଭୀମ ସିଂହଙ୍କ ପତ୍ନୀ ଶ୍ରୀମତୀ ପଦ୍ମିନୀଙ୍କୁ ସମର୍ପଣ କଲେ ନଗର ବେଷ୍ଟନ ତ୍ୟାଗ କରି ଫେରିଯିବେ ବୋଲି ଯବନମାନଙ୍କ ଦ୍ୱାରା ସମ୍ବାଦ ପଠାନ୍ତେ ଆମ୍ଭମାନଙ୍କୁ ସର୍ବ ସମ୍ପତ୍ତି ତୁଲ୍ୟ ଗଣନା କରିବା ରାଜପୁତମାନେ କୋପାଗ୍ନିରେ ପ୍ରଜ୍ୱଳିତ ହୋଇ ସେହି ସମ୍ବାଦବାହକକୁ ବଧ କରିବାକୁ କୃତ-ପ୍ରତିଜ୍ଞ ହେଲେ । ଦୂତକୁ ବଧ କରିବା ପାପ ବୋଲି ଭୀମ ସିଂହ ନିବାରଣ କରି ନଥିଲେ ସେହିଦିନ ଯବନମାନଙ୍କର ମୂର୍ଦ୍ଧା ଖଣ୍ଡିଆ ଖଣ୍ଡି ହୋଇଥାନ୍ତା । ରାଜପୁତମାନେ କ୍ରୋଧ ପରବଶ ହୋଇ ରକ୍ତବସ୍ତ୍ରବାସ ଧାରଣ ପୂର୍ବକ ଈର୍ଷା ସାଧନ କରିବାକୁ ଉତ୍ସାହିତ ହୋଇ ସିଂହନାଦ କଲେ । ଯବନମାନେ ଶତ୍ରୁମାନଙ୍କ ମଧ୍ୟରେ କଦଳୀ ବୃକ୍ଷବତ୍ ଛିନ୍ନମାନ ହୋଇ ପ୍ରାଣ ଆଶା ତ୍ୟାଗ କରି ପଳାୟମାନ ହେଲେ । ପରେ ସେମାନେ ଖାଁଙ୍କୁ ଉତ୍ସାହ ଦେଇ କବଚ ଶିରସ୍ତ୍ରାଣାଦି ଧାରଣ କରି ଯୁଦ୍ଧକୁ ଅଗ୍ରସର ହେଲେ । ଅଲ୍ଲାଉଦ୍ଦୀନ ଏହି ବାର୍ତ୍ତା ଶ୍ରବଣ କରି ପୁନର୍ବାର ନଗରବେଷ୍ଟନ କରାଇଲେ । ଉଭୟ ସୈନ୍ୟ ପରସ୍ପର ପ୍ରତି ଦାରୁଣ ଶରାଗ୍ନି ବୃଷ୍ଟି କଲେ । ଦୁର୍ଗ ପ୍ରବେଶର କେତେକ ଦିନ ପରେ ହେମଲତା ମଦନ ସିଂହଙ୍କ ପ୍ରତି ପୋଷଣ କରିଥିବା ଅନୁରାଗ ବିଷୟ ଚନ୍ଦ୍ରସେନଙ୍କୁ ଜଣାଇ ତାଙ୍କର ଆଗମନ ବାର୍ତ୍ତା ନାତୁଣୀଙ୍କୁ କହିବାକୁ ପ୍ରାର୍ଥନା କଲେ । ଏହି ଅନୁରୋଧ ରକ୍ଷା କରି ସେ ସକଳ ବିଷୟ ନାତୁଣୀଙ୍କୁ ଜଣାଇଲେ ଏବଂ କୌଣସି ଉପାୟରେ ହେଉ ହେମଲତାକୁ ମଦନ ସିଂହଙ୍କଠାରୁ ପଠାଇବାକୁ ଉଦ୍‌ଯୋଗବାନ ହେଲେ । ସେହି ଘୋର ଯୁଦ୍ଧ ସମୟରେ ହେମଙ୍କୁ ପଠାଇବା ଅନିଷ୍ଟ-ଜନକ ଭାବି ସେମାନେ କେତେ କାଳ କ୍ଷାନ୍ତ ହେଲେ ।

ଉପରୋକ୍ତ ଘଟଣାର ଚତୁର୍ଥ ଦିନ ନଗର ବେଷ୍ଟନ ଭୟଙ୍କରାକାର ଧାରଣ କଲା । ସେହିଦିନ ସନ୍ଧ୍ୟା ସମୟରେ ପ୍ରତାପ ସିଂହଙ୍କ ଦ୍ୱାରଦେଶରେ ଗୋଟିଏ ଶକଟ ଆସି ଠିଆ ହେଲା । ସେହି ଶକଟରେ ଜଣେ ବୃଦ୍ଧା ଓ ଜଣେ

Digitized by srujanika@gmail.com

ଷୋଡ଼ଶ ବର୍ଷୀୟା କନ୍ୟା ବସିଥିଲେ । ସଗଡ଼ଟି ଦ୍ୱାର ମୁହଁକୁ ଆସିବା କ୍ଷଣି ବୃଦ୍ଧା ଉଚ୍ଛ୍ବାସ, ଦ୍ୱାର ନିକଟରେ ବସିଥିବା କୃଷ୍ଣ ସିଂହଙ୍କୁ "ମଦନ ସିଂହ ଘରେ ଅଛନ୍ତି କି ?" ବୋଲି ପ୍ରଶ୍ନ କଲା । ହୁଇଘଣ୍ଟା ପୂର୍ବେ ମଦନ ସିଂହ ସ୍ୱଗୃହକୁ ଫେରି ଆସିଥିବାରୁ, କୃଷ୍ଣସିଂହ ବୃଦ୍ଧାର ପ୍ରଶ୍ନରେ 'ହଁ' ବୋଲି ମୁଣ୍ଡ ହଲାଇ, ଘର ଭିତରକୁ ଯାଇ ସ୍ୱାମୀଙ୍କୁ ସଙ୍ଗେ ଘେନି ଆସିଲା । ବୃଦ୍ଧା ମଦନ ସିଂହ ଆସିବାର ଦେଖି ତାହାଙ୍କ ଆଗକୁ ଯାଇ, "ବାବୁ ! ତୁମ୍ଭ ଦର୍ଶନାର୍ଥେ ତୁମ୍ଭ ପିତୃଭଗ୍ନୀ ହେମଲତା ଆସିଅଛନ୍ତି ।" ହେଉଁ ଲଜ୍ଜାବଶରୁ ଅବାଗ୍ଭୂମ୍ୟନବତୀ ହୋଇ ସେହି ସୁନ୍ଦରାଙ୍ଗୀ ଶକଟ ପଶ୍ଚାଦ୍ଭାଗରେ ଦଣ୍ଡାୟମାନ ହୋଇଅଛି ।" ଏହି କଥା ଶୁଣି ମଦନ ସିଂହଙ୍କ ପଞ୍ଚପ୍ରାଣ ଉଦ୍ଦୀପିତ ହେଲା । ସେ ଆତ୍ମସନ୍ତୋଷ ଲୁଗ୍ୱର ଭିତରକୁ ଯିବାକୁ ସ୍ତ୍ରୀ ଦ୍ୱୟଙ୍କୁ ଆହ୍ୱାନ କଲେ । ଏବଂ ସେହି ବାଳି-କାକୁ ଏକାକୀ ନିଜ ଆଳୟକୁ ନେଇଯାଇ ବସିବାକୁ ଆସନ ଦେଖାଇଲେ । ପାଲଗ୍ରାମରୁ କେଉଁରୂପେ ଆସିଲେ ସେହି ବୃତ୍ତାନ୍ତ ସବିଶେଷ ଜଣାଇବାକୁ କହିଲେ । ବାଳିକା ଉତ୍ତରକଲା " ପ୍ରଭୁ ! ତୁମ୍ଭଲାଗି ଅନେକ ଶ୍ରମ ସ୍ୱୀକାର କରି ଏହିଠାରେ ପହୁଞ୍ଚିଲି । ମୋହର ପ୍ରପିତାମହ ପରଲୋକ ପ୍ରାପ୍ତ ହେଲେ । ମୁଁ ନିରାଶ୍ରୟ ହୋଇଅଛି । ମୋହର ସଂରକ୍ଷଣର ଭାର ଆପଣଙ୍କୁ ଅର୍ପଣ ହୋଇଅଛି ବୋଲି ଏହିଠାକୁ ଆସିଲି " ଏହିରୂପେ କହି ଚକ୍ଷୁଦ୍ୱୟରୁ ଲୋତକ ଧାରା ବୁହାଇଲା । ମଦନସିଂହ ଦୟାର୍ଦ୍ର ହୋଇ " ସୁନ୍ଦରି ! କିଛି ଭୟ କରନାହିଁ ମୋହର ଦାଦା ଓ ମାତାଙ୍କୁ କହି ତରେ ମୁଁ ବିବାହ ଦେବି । ତୁ ଆମ୍ଭ ଘରେ ରହିଥାଅ " ବୋଲି କହୁଅଛନ୍ତି ଏମନ୍ତ ସମୟରେ ପ୍ରତାପ ସିଂହ ସେହି ମନ୍ଦିରରେ ପ୍ରବେଶ କଲେ । ଦାଦାଙ୍କୁ ଦେଖି ମଦନସିଂହ ଲଜ୍ଜିତ ହୋଇ ତାହାଙ୍କ ମୁଖକୁ ଅନାଇ ରହିଲେ । ମନ୍ଦିରରେ ନବୀନ ବାଳିକା ଦେଖି " ବାବୁ ! ଏ କିଏ " ବୋଲି ପ୍ରତାପସିଂହ ମଦନସିଂହଙ୍କୁ ପ୍ରଶ୍ନ କଲେ । ମଦନସିଂହ ଲଜ୍ଜାବନତମୁଖ ହୋଇ ଉତ୍ତର ଦାନରେ ଅକ୍ଷମ ହୁଅନ୍ତେ ବୃଦ୍ଧା ଉତ୍ତର ଦେଲା, " ବାବୁ ! ତୁମ୍ଭ ପୁତ୍ରଙ୍କ ମନପ୍ରାଣ ଆକର୍ଷଣକାରୀ ହେମଲତା । " ଏହି ସମ୍ବନ୍ଧ ବିଷୟରେ ପ୍ରତାପ ସିଂହଙ୍କ ପ୍ରତିକୂଳ ମତ ଥିଲେ ସୁଦ୍ଧା ପୁତ୍ରର ଅସନ୍ତୋଷ ଜନ୍ମାଇବାକୁ ଇଚ୍ଛା ନକରି ସେମାନଙ୍କୁ ଭିତରକୁ ନେବାକୁ ଆଦେଶ ପ୍ରଦାନ କଲେ । ଇଦ୍ଧ-

Digitized by srujanika@gmail.com

କପଟରେ ବୃଦ୍ଧା ପଦାକୁ ଯାଅନ୍ତେ ସେହି ବାଳିକା ମୋହାଚ୍ଛନ୍ନହୋଇ ମଦନସିଂହଙ୍କ ନିକଟକୁ ଯାଇ "ମୁଁ ତୁମ୍ଭର କ୍ରୀତ ଦାସୀ । ତୁମ୍ଭେ ମୋତେ ବିବାହ ହେବବୋଲି ବାକ୍‌ଦାନ କର ।" ବୋଲି କହି ତାହାଙ୍କୁ ଗାଢ଼ାଲିଙ୍ଗନ କରିବାକୁ ଲାଗିଲା । ଉତ୍ତରରେ ମଦନସିଂହ ତାହାକୁ ଦୂରକରି କହିଲେ "ସୁନ୍ଦରି ! ତୁ ରାଜକନ୍ୟା ପରା, ବିବାହ ନହେଉଣୁ ମୋତେ ଆଲିଙ୍ଗନ କରିବା ଉଚିତ ନୁହେଁ," ଏବଂ ସତୃଷ୍ଣଦୃଷ୍ଟି ବିଶୋଭିତା ହେମଲତା ସ୍ତ୍ରୀଜାତିର ସ୍ୱାଭାବିକ ଲଜ୍ଜା ପରିତ୍ୟାଗ କରି ତଦ୍ରୂପ ଆଲିଙ୍ଗନ କରି ଥିବାରୁ ବିଶେଷ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସେ ମନ୍ଦିରରୁ ବହିର୍ଗତ ହେଲେ । ଏମନ୍ତ ସମୟରେ ପତିଙ୍କ ଦ୍ୱାରା ପ୍ରେରିତ ସୁବର୍ଣ୍ଣବାଇ ସେହିସ୍ଥାନକୁ ଆସି, ପୁତ୍ରକୁ ଦେଖି, ମନ୍ଦହାସ ପ୍ରକାଶକରି; ଭାବୀ ବଧୂଟିକୁ ସଗୌରବରେ ଅନ୍ତଃପୁରକୁ ନେଇଗଲେ । ବୃଦ୍ଧା "ମୋହର ବନ୍ଧୁଘର ଅଛି" ବୋଲି କହି ବାହାରିଗଲା ।



## ପଞ୍ଚଦଶ ଅଧ୍ୟାୟ



ଏହି ଘଟଣାର ପର ଦିନ, ରାଜପୁତ୍ର ମାନେ ପଦ୍ମିନୀଙ୍କୁ କିମ୍ବା ତାହାଙ୍କ ପ୍ରତିବିମ୍ବ ଥରେ ଚକ୍ରବର୍ତ୍ତୀଙ୍କୁ ଦେଖାଇ ଚିତୋର ଆକ୍ରମଣ ପରିତ୍ୟାଗ କରିବେ ବୋଲି ସମ୍ରାଟ ସମ୍ବାଦ ପଠାଇଲେ । ତଦ୍‌ବିଷୟରେ ରାଜ ଦରବାର ହେଲା । ଦରବାରରେ ସମବେତ ସାମନ୍ତମାନଙ୍କ ମଧ୍ୟରୁ କେତେକ ଲୋକ ତଦ୍ରୂପ କରିବା ଅପମାନଜନକ ବୋଲି, ଆଉ କେତେ ପଦ୍ମିନୀଙ୍କ ରୂପ ଦର୍ପଣ ଛାୟାଦ୍ୱାରା ଦେଖାଇବା ନିର୍ଦ୍ଦୋଷ ବୋଲି ଯୁକ୍ତି କଲେ । ସ୍ୱକୁଳ ଯଶ ଓ ସ୍ୱଦେଶ ସ୍ୱାଧୀନ ବିଷୟ ବିବେଚନା କରି ଭୀମସିଂହ ନିଜ ସ୍ତ୍ରୀଙ୍କ ପ୍ରତିରୂପ ଚକ୍ରବର୍ତ୍ତୀଙ୍କୁ ଦେଖା-

Digitized by srujanika@gmail.com

ଜିବାକୁ ସ୍ୱୀକାର କଲେ, ମାତ୍ର ଚକ୍ରବର୍ତ୍ତୀ ଏକାକୀ ଆସିବାକୁ ଅରବସିଲେ । ରାଜପୁତମାନେ ନିରସ୍ତ୍ର ଓ ନିଃସହାୟ ପୁରୁଷଙ୍କୁ ବଧ କରିବେ ନାହିଁ ବୋଲି ବିଶ୍ୱାସ କରି କାମାକ୍ଷ ଚକ୍ରବର୍ତ୍ତୀ କେବଳ ରତ୍ନମାନ୍ ଖାଁଙ୍କୁ ସଙ୍ଗେ ଘେନି ନଗରକୁ ବଜେକଲେ । ଚକ୍ରବର୍ତ୍ତୀଙ୍କୁ ଉପଯୁକ୍ତ ଗୌରବ କରିବା ଭୀମସିଂହ ନିଜ ଭାର୍ଯ୍ୟାଙ୍କ ରୂପ ଖୋଟିଏ ଦର୍ପଣରେ ପ୍ରତିବିମ୍ବିତ ହେଲାପରି ବନ୍ଦୋବସ୍ତ କରି ଚକ୍ରବର୍ତ୍ତୀଙ୍କୁ ଦେଖାଇଲେ । ଉଦ୍ୟାନେ ରତ୍ନମୋହନାକାର ସନ୍ଦର୍ଶନ କରି ସେହି ତ୍ରୈଲୋକ୍ୟ ସୁନ୍ଦରୀ ପଦ୍ମିନୀ ପ୍ରକୃତରେ କେତେ ମନୋହାରୀ ହୋଇ ନଥିବେ ବୋଲି ଆଶ୍ଚର୍ଯ୍ୟ ଓ ସନ୍ତୁଷ୍ଟ ହୋଇ ଚକ୍ରବର୍ତ୍ତୀ ଶିବିରକୁ ପୁନରାବୃତ୍ତ ହେବାକୁ ସିଦ୍ଧ ହେଲେ । ଏହି ସମୟରେ ଚକ୍ରବର୍ତ୍ତୀ ଓ ଭୀମସିଂହ ମଧ୍ୟରେ କଥୋପକଥନ ହେଲେ ।

ଚକ୍ରବର୍ତ୍ତୀ—ମୁଁ ଆପଣଙ୍କ ସଦ୍ବ୍ୟବହାରରେ ବିଶେଷ ସନ୍ତୁଷ୍ଟ ହେଲି । ଇତିପୂର୍ବେ ମୁଁ ଆପଣଙ୍କୁ କରିଥିବା ଅପମାନ ବିଷୟରେ ବିଶେଷ ଦୁଃଖିତ ଅଛି । ଏଣିକି ଆମ୍ଭେମାନେ ବନ୍ଧୁଭାବରେ ପ୍ରବର୍ତ୍ତି ପାରିବା ।

ଭୀମସିଂହ—ଆପଣଙ୍କ ଇଚ୍ଛାନୁଯାୟୀ ହେଉ । ମାନଦାନ ଅପେକ୍ଷା ପ୍ରାଣଦାନ ଶ୍ରେୟସ୍କର । ଆମ୍ଭେ ତାହାକୁ ଶତ୍ରୁ କରିବା ଲୋକ ନୋହୁଁ ।

ଚକ୍ରବର୍ତ୍ତୀ—ସତ୍ୟ, ମୁଁ ଆପଣଙ୍କ ବିଷୟ ନଜାଣିପାରି ଦୁର୍ମାର୍ଗଗାମୀ ଲୋକଙ୍କ ପରାମର୍ଶରେ ତୁମ୍ଭଦେଶ ପ୍ରତି ଯୁଦ୍ଧ ଯାତ୍ରା କରିଅଛି । ସେଥିଲାଗି କ୍ଷମା ପ୍ରାର୍ଥନା କରୁଅଛି ।

ଭୀମ—କ୍ଷମାର କଥା କି ଅଛି ? ଭୁଲିଯିବା କଥାକୁ କିଏ କଣ କରିପାରିବ ?

ଚକ୍ରବର୍ତ୍ତୀ ଓ ଭୀମସିଂହ ଏହିରୂପ କଥୋପକଥନ କରୁଥିବା ସମୟରେ ଅସହାୟ ଭୂରସ୍ଥ ତାଙ୍କୁ ବନ୍ଧନ କରିବା ଦୁରଭିପ୍ରାୟ ତାହାର ମନରେ ଉଦିତ ହୋଇନାହିଁ । ପରେ ଚକ୍ରବର୍ତ୍ତୀ ନିଜ ଶିବିରକୁ ପ୍ରତ୍ୟାଗମନ କରିବାକୁ ଆରମ୍ଭ କଲେ । ତାହାଙ୍କୁ ଖଣ୍ଡେଦୂର ଗଡ଼ଧରିବା ସକାଶେ ଭୀମସିଂହ ଏକାକୀ ଗଡ଼ରୁ ବେଢେଦୂର ଗୃହଯାନ୍ତେ ଚକ୍ରବର୍ତ୍ତୀ ତାହାଙ୍କୁ ନାନାକଥା କହି କହି ଛଳ ସୈନ୍ୟ ସମୂହ ଅବସ୍ଥାନ କରିବା ପ୍ରଦେଶ ପର୍ଯ୍ୟନ୍ତ ଭୁଲାଇ ନେଇଗଲେ । ଏମନ୍ତ

Digitized by srujanika@gmail.com

ସମୟରେ ଚନ୍ଦ୍ରବର୍ତ୍ତୀଙ୍କ ପୂର୍ବ ବନ୍ଦୋବସ୍ତ ଅନୁଯାୟୀ କତିପୟ ତୁରସ୍କ ସୈନି-କମାନେ ହଠାତ୍ ଭୀମସିଂହଙ୍କୁ ଆକ୍ରମଣ କଲେ । ମନୋଧୈର୍ଯ୍ୟ ଧାରଣ ବିଷୟରେ ପ୍ରମାଦ ଯମ ଭୀମସିଂହ ଏହି ଘୋର ବିପଦ ସନ୍ଦର୍ଶନରେ ବିସ୍ମିତ ହୋଇ ନିଜ ହସ୍ତରେ ଅନେକ ଯୋଦ୍ଧାଙ୍କୁ ନିବାରଣ କଲେ । କିନ୍ତୁ ଅପାର ସୈନ୍ୟ ସମବେତ ହେବାଯୋଗୁଁ, ଏକାକୀ ସେମାନଙ୍କ ସହିତ କଳହ କରି କୃତକାର୍ଯ୍ୟ କରିନପାରନ୍ତେ, ସେହିଠାରେ ଲାଗି ରହିଥିବା ରହିମାନ୍ ଖାଁ ଆସି “ଏବେ ଅମ୍ଭେ କୟେଦ କଲୁଁ, ଆସ ଥାଅ” କହି ଉଠାଇ ନେଲା । ଏବଂ ମହମ୍ମଦୀୟ ଭୃତ୍ୟମାନେ ତାହାଙ୍କୁ କାରାରୁଦ୍ଧ କରାଇଲେ । ପଦ୍ମିନୀଙ୍କୁ ସମର୍ପଣ ନକଲେ ତୋହର କାରାଗୃହ ମୋଚନର ଆଶା ନାହିଁ ବୋଲି ଚନ୍ଦ୍ର-ବର୍ତ୍ତୀ ତାହାଙ୍କୁ ସ୍ପଷ୍ଟସ୍ୱରରେ ଜଣାଇଦେଲେ । ଭୀମସିଂହ ମ୍ଳେଚ୍ଛଙ୍କ କରଗତହେବା ସମ୍ବାଦ ଚିତୋର ନଗରରେ ଜଣାଯାନ୍ତେ ନଗରବାସିଙ୍କ ଦୁଃଖ ବର୍ଣ୍ଣନାତୀତ ହୋଇ ଉଠିଲା । ପ୍ରଚଣ୍ଡ ସୂର୍ଯ୍ୟସମ ଦୁର୍ଦ୍ଧର୍ଷ ଓ ପ୍ରତାପବାନ ଭୀମସିଂହ ପଶ୍ଚିମ ସାଗରବତ୍ ମ୍ଳେଚ୍ଛ ସୈନ୍ୟାଧୀନ ହେବାକ୍ଷଣି ପଦ୍ମିନୀର ମୁଖାରବିନ୍ଦ ମ୍ଳାନପ୍ରଭ ହେଲା । ନଗରବାସିମାନେ ଅବାଳ ବୃଦ୍ଧ ଅନ୍ନପାନାଦି ତ୍ୟାଗକରି ଦୁଃଖାତିଶ-ଯ୍ୟରେ ବାକ୍ୟାଳାପ ସୁଦ୍ଧା କରିପାରିଲେ ନାହିଁ । କାହାର ବଦନରେ ରଞ୍ଚ ସଞ୍ଚାରର ଚିହ୍ନ ସୁଦ୍ଧା ଦୃଷ୍ଟ ହେଲା ନାହିଁ । ରାଜମନ୍ଦିର, ମେଡ଼, ମଣ୍ଡପ, ଉଦ୍ୟାନ, ଦେବମନ୍ଦିରାଦି ପ୍ରଭାହୀନ ହେଲା । ସୈନିକମାନେ ଉତ୍ସାହହୀନ ହୋଇ, ହା ହା କାର ପୂର୍ବକ ଦୀର୍ଘ ନିଃଶ୍ୱାସ ପକାଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲେ । ମଦନସିଂହ ଉପସ୍ଥିତ କତିପୟ ସାହସୀ ଯୁବାଙ୍କ ସହାୟତାରେ ଚନ୍ଦ୍ରବର୍ତ୍ତୀଙ୍କ ସୈନ୍ୟ ସହିତ ଯୁଦ୍ଧକରିବାକୁ ଇଚ୍ଛାକଲେ କିନ୍ତୁ ଗୋରାସିଂହ ସେମାନଙ୍କୁ ନିବାରଣ କଲେ । ଅନନ୍ତର ରାଜପୁତ ବୀରମାନେ ଯେ ଯାହା ଗୃହକୁ ଫେରିଯାଇ ସାଙ୍ଗ ଗନ୍ତ କର୍ତ୍ତବ୍ୟ ବିବେଚନା କରି ବସିଲେ । ପ୍ରତାପସିଂହ ଓ ମଦନସିଂହ ଅତ୍ୟନ୍ତ ସଂଖେଦିତହୋଇ ଘରକୁ ଗଲେ । ମଦନସିଂହ ନିଜ ପ୍ରିୟ-ତମାର କୁଶଳ ପଲ୍ଲବର ଗୋଟିଏ ଚଉକି ଉପରେ ବସନ୍ତେ ସୁବର୍ଣ୍ଣବାଈ ଧୀରେ ଧୀରେ ତାହାଙ୍କ ନିକଟବର୍ତ୍ତୀହୋଇ ଉଚ୍ଚାସନ ଗ୍ରହଣକରି ନମ୍ରମତେ କହିଲେ:—

“ବାବୁ ! ମୁଁ ଗୋଟିଏ ସାମାନ୍ୟ କଥା କହିବାକୁ ଆସିଅଛି । ଏହି ବାଲକାଠାରେ

କେଉଁ ରୂପ ତୋହର ପ୍ରେମ ଜନ୍ମିଅଛି, ମୁଁ ଜାଣେନାହିଁ । କିନ୍ତୁ ଏ କଣେ ଭୁର୍ଗାଗ୍ୟବତୀ ବୋଲି ମୋହର ବିଶ୍ୱାସ ହେଉଅଛି । ଅବଗୁଣ୍ଠନ ତାହାର ଉପର ଦେଖନ୍ତେ ସେ ତେତେ ସୁନ୍ଦରୀ ପରି ସ୍ପଷ୍ଟ ବୋଧ ହେଲନାହିଁ । ସୁନ୍ଦରୀ ଗଣ ହେଣେଥାଉ, ଏହାଠାରେ ସୌନ୍ଦର୍ଯ୍ୟର ପୂର୍ଣ୍ଣ ଦଶୁଅଛି । ଅନ୍ତଃପୁରରେ ମୋହର ଧାତ୍ରୀର ଗତରାତ୍ର ଅଙ୍ଗୁରୀୟ ହଜିଗଲା । ସେ ନେଇଅଛି ବୋଲି ଦାସୀମାନେ କହୁଅଛନ୍ତି । ମୋହର ପ୍ରିୟପାତ୍ରୀ ହୋଇଥିବାହେତୁ ସେମାନେ ତାହାକୁ କିଛି ନବୋଲି ଭୁଲିଛନ୍ତେ ।" ନିଜ ମାତା ମୁଖରୁ ଉଦ୍ଦୃଷ୍ଟ କଣ୍ଟକପୂର୍ଣ୍ଣ ବଚନାବଳୀ ଶ୍ରବଣକରି ମଦନସିଂହଙ୍କ ଦୁଃଖର ସୀମା ରହିଲନାହିଁ । ତନ୍ତ୍ର ମା କେବେ ମିଥ୍ୟା କହିବେନାହିଁ ବୋଲି ଦୃଢ଼ ବିଶ୍ୱାସ ଥିବାରୁ ଦାସୀମାନେ ଏହି ମାୟା ଲଗାଇଥିବେ ବୋଲି ଜାଣି, କହିଲେ, "ମା । କି ସ୍ନାରଣରେ ହେମଲତାଠାରେ ମୋହର ଏହି ଦୁରଭିପ୍ରାୟ ଜନ୍ମିଅଛି । ସେ ଜଣେ ସଦ୍‌ଗୁଣବତୀ ! କାଳକ୍ରମେ ଏଥିର ଉଦ୍ଦେଶ୍ୟ ଭୁ ଜାଣିପାରିବୁ, ଆଉ ଅଧିକ କଥା କହି ମତେ ବାଧା ଦଅନାହିଁ ।" "ଯାହା ହେଉ, ମୋତେ ଏହାକୁ ବିବାହ କେବେ କରିବାକୁ ଦେବନାହିଁ" ବୋଲି କହି ସୁବର୍ଣ୍ଣବାଇ ଅନ୍ତଃପୁରକୁ ପ୍ରସ୍ଥାନ କଲେ । ମଦନସିଂହ ସନ୍ଦେହାପନ୍ନ ହୋଇ ପ୍ରିୟତମା ହେମଲତାର ମନ୍ଦିରକୁ ଗମନ କଲେ । ସେଠାରେ ପଲ୍ୟଙ୍କଶାୟୀ ସେହି ବାଳିକା ଅଚିରାତ୍ ଉଠି ଅବଗୁଣ୍ଠନ ଧାରଣକରି ମଦନସିଂହଙ୍କ ପାଦତଳେ ପଡ଼ି ରୋଦନକରି ଏହିରୂପ କହିଲା । "ପ୍ରାଣେଶ୍ୱର ! ତୁମ୍ଭ ମାତା ଓ ଦାସୀମାନେ ମତେ ସବୁବେଳେ ଦେଉଅଛନ୍ତି । ମୁଁ କେଉଁପରି ହେଲେ ପ୍ରାଣତ୍ୟାଗ କରିବାକୁ ସିଦ୍ଧ ହୋଇଅଛି । ତୁମ୍ଭ ଦର୍ଶନ କରିବାପାଇଁ ଏପର୍ଯ୍ୟନ୍ତ ପ୍ରାଣ ଧାରଣ କରିଥିଲି, ନଚେତ୍ ପୂର୍ବେ ଜୀବନ ହରାଇଥାନ୍ତି । ମୋତଠାରେ ଆପଣ ଏପରି ନିର୍ଦ୍ଦୟ ହୁଦୟ ହେବା ଧର୍ମନୁହେ । ମୋହର ପ୍ରପିତାମହ ତୁମ୍ଭ ହାତରେ ହାତପକାଇ ମତେ ସମର୍ପଣ କରିଥିଲେ" । ତାହାର ବିଳାପ ଶ୍ରବଣକରି ମଦନସିଂହ ବଡ଼ ଲଜ୍ଜିତ ହୋଇ ନିରୁତ୍ତର ହେଲେ । ଏହିକ୍ଷଣରେ ଭୂମି ଚନ୍ଦ୍ରୋଦୟ ସେହି ବାଳିକା ଖଣ୍ଡେ ଗୋଟି ପତ୍ର ବାହାରକରି ତାହାଙ୍କ ହସ୍ତକୁ ବଢ଼ାଇଦେଇ କହିଲା "ମୋର ବିଷୟରେ, ମୌଳବୀ, ନାଜରଜଣ ପ୍ରମୁଖ ଲେଖିବା ଅଭିପ୍ରାୟ ଥିଲେ ହି ଦେଖ । ମୋହର ସଭାପ୍ରଦର୍ଶନା ବିଷୟରେ ସେମାନେ ହେତେ

ପ୍ରଶଂସା କରିଅଛନ୍ତି ଅପଣ ନିଜେ ଜାଣିପାରିବେ ।" ମଦନସିଂହ ସେହି ପତ୍ର-ଗୁଡ଼ିକ ପାଠକରି, ପ୍ରିୟତମାର ନମ୍ରତା ଓ ଖାନସିଂହଙ୍କ ଦୁରବସ୍ଥା ହେତୁ ବିଶେଷ ବ୍ୟଥାପାଇ ସେହି ରାତ୍ର ଚିଦାନନ୍ଦଯୋଗୀଙ୍କ ପରାମର୍ଶ ଗ୍ରହଣ କରିବା ଉଚିତ ମଣି ତାହାଙ୍କ ମଠକୁ ପ୍ରସ୍ଥାନ କଲେ । ମଦନସିଂହଙ୍କ ମଳିନବଦନ ଦର୍ଶନକରି ସେ ଚଞ୍ଚିରଞ୍ଜନ ଯୁକ୍ତ ଥିବାର ଅନୁମାନକରି, ଯୋଗୀ ତାହାଁର କାରଣ ବାରମ୍ବାର ଜିଜ୍ଞାସା କରନ୍ତେ ପରିଶେଷରେ ମଦନସିଂହ ପ୍ରିୟତମା ହେମଲତାର ବୃତ୍ତାନ୍ତ ଆମୂଳ ଜଣାଇଲେ । ହେମଲତା ମଦନସିଂହଙ୍କ ଘରଠାରେ ଥିବାର ଶୁଣି, ତାହାଙ୍କୁ ଅପନନ୍ଦା ହେଲା ବୋଲି ଜଣାଇ, "ସେ ଅସିଲେକି ? ଅଚ୍ଛା, ମାତୃ ପିତୃହୀନା ସେହି ଅବଳା ପ୍ରତି କେତେ ଅପବାଦ ସମ୍ଭବିଲା । ମୁଁ ତାହାଙ୍କ ସହିତ କେତେକ କଥା କହିବି, ସେଥିବିଷୟରେ ତୁମ୍ଭର କିଛି ଆପତ୍ତି ଅଛି କି ?" ବୋଲି ଯୋଗୀ ମଦନସିଂହଙ୍କୁ ପଚାରିଲେ । ମଦନସିଂହ କିଛି ଆପତ୍ତି ନାହିଁ-ବୋଲି କହିବାକ୍ଷଣି ଯୋଗୀ ତାହାଙ୍କ ଘରଠାକୁ ପ୍ରସ୍ଥାନକଲେ । ମଦନସିଂହ ଯୋଗୀଙ୍କ ସହିତ ଘରକୁ ଫେରିଯାଇ ସେହି ବାଳିକା ଥିବା ମନ୍ଦିରରେ ପ୍ରବେଶ-କରି ବାଳିକାକୁ ଦେଖାଇଲେ । "ଏହି ବାଳିକା ସହିତ ଥୋଡ଼େ ଗୋପନୀୟ ବିଷୟ ଅଛି" ବୋଲି ଯୋଗୀ କହିବାମାତ୍ରେ ମଦନସିଂହ ବାହାରକୁ ଗଲେ । ଅନନ୍ତର ଯୋଗୀ ବାଳିକାଠାକୁ ଯାଇ "ମା ! ଜ୍ୱର ଊଣା ହେଲାନା ?" ବୋଲି ପ୍ରଶ୍ନ କଲେ, ତାହାଁର କିଛି ଉତ୍ତର ନ ଦିଅନ୍ତେ "ତୁ କେଉଁଠାରୁ ଅସିଲୁମା" ବୋଲି ପୁନଃ ପ୍ରଶ୍ନ କଲେ । କିନ୍ତୁ ବାଳିକା ଉତ୍ତର ଦାନରେ ପରାଙ୍ମୁଖୀ ହେଲା । ପରେ ଯୋଗୀ ତାହାର ହସ୍ତ ଧାରଣ କରି " ତୁ ମୋହର ଝିଅ ପରି, ମୋହ ସହିତ କଥା କହିବାକୁ ଲଜ୍ଜା କର ନାହିଁ" ବୋଲି ପ୍ରିୟାଲାପ କରନ୍ତେ ବାଳିକା, ମସ୍ତକ ଉତ୍ତୋଳନକରି କଥୋପକଥନ କରିବାକୁ ସମ୍ମତ ହେଲେ—

ଚିଦାନନ୍ଦ—ତୁ ଏତେଦିନ ପର୍ଯ୍ୟନ୍ତ କେଉଁଠାରେ ଥିଲୁ ? ଓ କାହାର ଅଧୀନରେ ଥିଲୁ ?

ବାଳିକା—ମୁଁ ଅଲଗଡ଼ଠାରେ ଜଣେ ସ୍ୱାମୀଙ୍କ ଘରେ ଥିଲି ।

ଚିଦା—ତୋତେ ପାଳ ଗ୍ରାମଠାରୁ କିଏ ଆଣିଲା ?

Digitized by srujanika@gmail.com

ବାଳିକା—କୋଳାହଳ ସମୟରେ ମୁଁ ନିଦ୍ରେ ବାହାର ଆସିଲି, ମତେ କିଏ ଆଣି ନାହିଁ ।

ଏହି ଉତ୍ତର ଶ୍ରବଣ କରି ଯୋଗୀ ସନ୍ଦେହାପନ୍ନ ହୋଇ, ତାହାର ଅବଗୁଣ୍ଠନ ବାହାର କରି ବପୃହୃଷଣ ମୁଖ ନିରୀକ୍ଷଣ ପୂର୍ବକ, ପଦାକୁ ଯାଇ ମଦନ ସିଂହଙ୍କୁ କହିଲେ "ଇତି ମଧ୍ୟରେ ଘଟିବା କଷ୍ଟ ହେତୁ ଏହି ଅବଳାର ମନର ଚାଞ୍ଚଲ୍ୟ ଘଟିଅଛି । ମୋହଠାକୁ ପଠାଇ ଦିଅ । ମୁଁ ଚିକିତ୍ସା କରି ଦୁଇ ଦିନରେ ଏହି ଜଡ଼ତା ଛଡ଼ାଇଦେବି" ଅନନ୍ତର ପୁନର୍ବ୍ବାର ଭିତରକୁ ଯାଇ, "ଅଲୋ, ଝିଅ ! କଣ୍ଟପୁରେ ମଦନ ସିଂହ ତୋହର ଭର୍ତ୍ତା ହେବେ । ତୋହର ଶରୀରରେ ବିଷମ ରୋଗ ହୋଇଅଛି । ମୋହ ମଠରେ ଦୁଇଦିନ ରହି ଔଷଧ ସେବନ କରି ଆରୋଗ୍ୟ ହେଲେ ପୁନର୍ବାର ଏଠାକୁ ପଠାଇଦେବି, ମୋହ ସଙ୍ଗତରେ ଆସ" ବୋଲି କହି ମଦନ ସିଂହଙ୍କ ସମ୍ମତି କ୍ରମେ ତାହାଙ୍କୁ ସଙ୍ଗେ ଘେନି ଚାଲିଗଲେ । ମଦନ ସିଂହ ଚିନ୍ତାକ୍ରାନ୍ତ ହୋଇ ସେ ରାତ୍ରି ଉନିଦ୍ର ରହିଲେ । ଯୋଗୀ ଉକ୍ତ ବାଳିକାକୁ ମଠକୁ ନେଇ ନିଦ୍ରା କରାଇ, ପ୍ରିୟ ଶିଷ୍ୟ ସଦାଶିବଙ୍କୁ ଡାକି, ସେହି ବାଳିକା ବିଷୟରେ କଥୋପକଥନ କରି ସୁଖରେ ନିଦ୍ରାଗଲେ ।



## ଷଷ୍ଠଦଶ ଅଧ୍ୟାୟ ।

ଅରଦିନ ପ୍ରାତଃକାଳରେ ନିଦ୍ରା ଭଙ୍ଗହେବା ପୂର୍ବେ ଗୃହଭୃତ୍ୟମାନେ ଆସି ରାଣୀଙ୍କ ଅନ୍ତର୍ଦ୍ଧାନ ହୋଇଅଛି ବୋଲି ଜଣା କରନ୍ତେ ମଦନ ସିଂହ ନିଦ୍ରାତ୍ୟାଗକରି ବ୍ୟାକୁଳାନ୍ତଃ ଚତୁର୍ଦ୍ଦିଗ ଖୋଜି ଅନ୍ୱେଷଣ ପୂର୍ବକ ମଠରେ ଥିବା ପ୍ରିୟତମାର କୁଶଳ ବୁଝିବା ସକାଶେ ପ୍ରଥମେ ଯୋଗୀଙ୍କଠାକୁ ଗଲେ । ଯୋଗୀ ମଦନ-ସିଂହଙ୍କୁ ଏକାନ୍ତ ସ୍ଥାନକୁ ନେଇ ଗୋପନରେ କହିଲେ "ବାବୁ ! ଏହି ଯୁବତୀ

Digitized by srujanika@gmail.com

ହେମଲତା ନୁହେ । ପାଲଗ୍ରାମର ସୁଧାନାମ୍ନୀ ଦାସୀ ଅଛି—ଏହାକୁ ସର୍ବସମ୍ମୁଖରେ ଉପଯୁକ୍ତ ଦଣ୍ଡ ଦିଆଇବ । ତୁ ନିଜ କର୍ତ୍ତବ୍ୟ ସାଧନରେ ତତ୍ପରହୁଅ ।" ଏହି କଥା ଶୁଣି ମଦନ ସିଂହ ଅତୀବ ଆଶ୍ଚର୍ଯ୍ୟ ହୋଇ, ସୁଧା ତାହାଙ୍କୁ ପ୍ରତାରଣା କରିଥିବାରୁ ସେ ଦଣ୍ଡଯୋଗ୍ୟ ବୋଲି ସ୍ୱୀକାର କଲେ । କିନ୍ତୁ ସ୍ତ୍ରୀଯୋଗୁଁ କ୍ଷମାକରି ପ୍ରାଣଦଣ୍ଡ ନଦେବାପାଇଁ ଯୋଗୀଙ୍କୁ ଅନୁରୋଧ କରି ନଗରକୁ ପ୍ରସ୍ଥାନକଲେ । ସେ ଯିବା ସମୟକୁ ପ୍ରତାପ ସିଂହ, ଗୋପାଳ ସିଂହ ପ୍ରମୁଖ ପ୍ରଧାନ ଯୋଦ୍ଧାମାନେ ଦ୍ୱାର ଗୃହରେ ସମବେତ ହୋଇଥିଲେ । ମଦନ ସିଂହ ଉପଯୁକ୍ତାସନରେ ଉପବେଶନକରି ଭୀମ ସିଂହଙ୍କୁ ଉଦ୍ଧାର କରିବାକୁ ଉପାୟ ବିବେଚନା କଲେ । ଏମନ୍ତ ସମୟରେ ଗୋପାଳ ସିଂହ ରାଣାଙ୍କୁ ଓ ସଭ୍ୟମାନଙ୍କୁ ଉଦ୍ଦେଶ୍ୟ କରି କହିଲେ, "ବର୍ତ୍ତମାନ ଅମ୍ଭେ ମଦନ ସିଂହଙ୍କୁ ଚକ୍ରବର୍ତ୍ତୀଙ୍କଠାକୁ ଦୂତ କରି ପଠାଇବା; ଅମ୍ଭେ ରାଜ ଧର୍ମକୁ ଅନୁସରି କାର୍ଯ୍ୟ କରୁଥିବାଠାରେ ତୁମ୍ଭେ ଇଦୃଶ ଅନ୍ୟାୟ କାର୍ଯ୍ୟ କରିବା ସମ୍ପୂର୍ଣ୍ଣରୂପେ ଉଚିତ ନୁହେ ବୋଲି" ସେ ଚକ୍ରବର୍ତ୍ତୀଙ୍କୁ ଜଣାଇବେ । ଯଦି ଚକ୍ରବର୍ତ୍ତୀ ନିଜର ଦୋଷ ମାର୍ଜ୍ଜନା ନକରନ୍ତି ତେବେ ସମୟୋଚିତ କାର୍ଯ୍ୟ କରିବା" । ଏହି କଥା ଶୁଣି ସମସ୍ତେ ତଦ୍ରୂପ କରିବାକୁ ମତଦେଲେ । ସ୍ୱାମୀଙ୍କ କାର୍ଯ୍ୟସାଧନାର୍ଥେ ଯେତେ ଦୁଃସାଧ କର୍ମ ହେଲେ ସୁଦ୍ଧା କରିବାକୁ ସିଦ୍ଧ ଥିବାରୁ ମଦନ ସିଂହ ତଦ୍ରୂପ କରିବାକୁ ସ୍ୱୀକୃତ ହେଲେ । ଏବଂ ଘରକୁ ଫେରି ନଯାଇ, ମାତା ସୁବର୍ଣ୍ଣବାଈଙ୍କଠାରୁ ବିଦାୟ ନନେଇ, ସଭାସ୍ଥ ପିତୃବ୍ୟଙ୍କୁ ନମସ୍କାରକରି ତାହାଙ୍କ ଆଶୀର୍ବାଦ ପ୍ରାପ୍ତହୋଇ, ରାଣାଙ୍କଠାରୁ ବିଦାୟଘେନି, କତିପୟ ସୈନ୍ୟଙ୍କ ସମଭିବ୍ୟାହାରରେ ଚକ୍ରବର୍ତ୍ତୀଙ୍କ ନିକଟକୁ ପ୍ରସ୍ଥାନ କଲେ ।

ଏଣେ ସଦାନନ୍ଦ ଯୋଗୀ ଅରୁଣୋଦୟ ସମୟରେ ନିଦ୍ରାତ୍ୟାଗ କରି ଉଠି, ସ୍ନାନ, ସନ୍ଧ୍ୟା, ନିତ୍ୟକର୍ମ ସାରି, ସଦାଶିବ ଡାକି ଆଣିଥିବା ଦଣ୍ଡାକୁ ବସିବାକୁ କହି ଗୋଟିଏ ଗର୍ଦ୍ଦଭକୁ ଆଣାଇ ଗଛରେ ବାନ୍ଧିରଖି, ସୁଧାକୁ ପାଖକୁ-ଡାକି କହିଲେ "ଅଲୋ ! ଧୂର୍ତ୍ତା ! ତୋହ ବୟସ ମଧେ ଭଲରୂପେ ଜଣା-ଯାଉଛି । ତୁ 'ପାଲ' ଗ୍ରାମର ସୁଧା ଅଟୁ । ତୁ ଏହି ଚିତୋର ନଗରକୁ କେଉଁପରି ଆସିଲୁ ?" ସୁଧା ଭୟରେ ବ୍ୟସ୍ତହୋଇ କେତେକ୍ଷଣ ତୁନିହୋଇ, ଆଉ

Digitized by srujanika@gmail.com

ଦେଖିବା ଅନାର୍ଯ୍ୟ ଖାଁ କହିଲା, "ସ୍ୱାମି ! ମଦନସିଂହ ପାଳଗ୍ରାମରେ ଥିବା ସମୟରେ ତାହାଙ୍କଠାରେ ମୋହର ମୋହ ଜନ୍ମିଲା । ମନକୁ ସମ୍ଭାଳିନପାରି ହେମଲତା ଖାନଙ୍କ କରଗତ ହେବାର ଉପାୟକରି ମୁଁ ତାହାଙ୍କ ବେଶଧାରଣ-କରି ଆସି ମୋହର କର୍ମ ଦୋଷକରୁ ଧରାପଡ଼ିଲି । ମୋହର ପ୍ରାଣ ରକ୍ଷାକର । ମୁଁ ତୁମ୍ଭର କନ୍ୟା ନୁହେଁକି ?" ଏହାକହି ଯୋଗୀଙ୍କ ପଦତଳେପଡ଼ି ହୃଦୟଭେଦୀ ରୋଦନ ଆରମ୍ଭ କଲା । ଯୋଗୀ କରୁଣାକରି ପ୍ରାଣଦାନ ଦେବାକୁ ବାକ୍ୟଦାନ କରି, ତାହାକୁ ବ୍ରାହ୍ମଣଙ୍କୁ ନେଇ ନପ ଗୋଟିଏ ହାତ ଆଉ ସଦାଶିବ ଅରହାତ-ଥର, ସେହି ପତ୍ନୀ ଯୌବନାକୁ ଶକୁତାଡ଼ି କରିବାକୁ ଆଜ୍ଞାଦେଇ କ୍ଷୌର କରିବାକୁ ଭଣ୍ଡାରୀକୁ ଆଜ୍ଞା ଦେଅନ୍ତେ ସେ ଶଧାର ଭ୍ରମରବହୁ କୁଟିଳ କେଶଗୁଚ୍ଛ କର୍ତ୍ତନକରି ତୈଳଙ୍ଗୀକୁ ବ୍ରାହ୍ମଣ ବେଧବାପରି କରିଦେଲା । ସେହି ବକୁତାଙ୍ଗୀକୁ ଯୋଗି ଗର୍ଦ୍ଦଭ ପୃଷ୍ଠରେ ବସାଇ ଚିତୋର ନଗରରେ ସାହି ସାହି ବୁଲାଇଲେ । ଗ୍ରାମବାସିମାନେ ତାହାକୁ ଦେଖିବାକୁ ଦଳ ଦଳ ହୋଇ ଆସି ହାସ୍ୟରବର ହାଟ ବସାଇଲେ । ଏହି ପରାଭବ ସମ୍ଭାଳ ନପାରି ସନ୍ଧ୍ୟା ସେହିଦିନ ଗ୍ରାମାନ୍ତରକୁ ପଳାୟନ କଲା ।

ତେଣେ ମଦନ ସିଂହ ଚକ୍ରବର୍ତ୍ତୀଙ୍କ ଶିବିରକୁଯାଇ ନିଜର ଆଗମନ ବାର୍ତ୍ତା ପଠାଇଲେ । ଶତ୍ରୁକର୍ଣ୍ଣଧାମଣି ମଦନ ସିଂହଙ୍କୁ ନିଜ ଶତ୍ରୁ ସଂଖ୍ୟାରୁ ଅନ୍ତର୍ଭୁକ୍ତ କରିବାକୁ ଚିରକାଳରୁ ଚେଷ୍ଟା କରୁଥିବା ଚକ୍ରବର୍ତ୍ତୀ ତାହାଙ୍କ ଆଗମନ ସମ୍ବାଦ ଶୁଣିବା ମାତ୍ରେ ରହିମାନ ଖାଁଙ୍କଠାକୁ ଖବର ପଠାଇଲେ । ରହିମାନ ଖାଁ, ମଦନ ସିଂହଙ୍କ ପ୍ରତି ନିଜର ଈର୍ଷାଭାବ ସମ୍ବର୍ଦ୍ଧନକରି, ତାହାଙ୍କ କଥା ଶୁଣିବା ଅନାବଶ୍ୟକ ଓ ଶୀଘ୍ର ତାହାଙ୍କୁ କାରାରୁଦ୍ଧ କରାଇବା ଉଚିତ ବୋଲି ଚକ୍ରବର୍ତ୍ତୀଙ୍କୁ ପରାମର୍ଶ ଦେଲା—ସେହିପ୍ରକାରେ ମଦନ ସିଂହଙ୍କୁ କାରାଗୃହରେ ଆବଦ୍ଧ କରାଇ, ରହିମାନ ଖାଁକୁ ତାଙ୍କୁ ଜଗି ରହିବାକୁ ଅଲାଉଦ୍ଦିନ ଆଦେଶ ପ୍ରଦାନ କଲେ । ମଦନ ସିଂହଙ୍କ ଅନୁଚର ବର୍ଗରୁ ଜଣେ ଖସି ପଳାଇ ଏହି ଦୁଃସମ୍ବାଦ ପ୍ରତାପ ସିଂହଙ୍କୁ ଜଣାଇଲା । ଭୀମସିଂହ କଏଦ ହେବାଦିନ ଯାଦୃଶ ଚିତୋର ନଗର ଦୁଃଖମଗ୍ନ ହୋଇଥିଲା ଆଜିଦିନ ମଧ୍ୟ ତାଦୃଶ ଦୁଃଖ କୁଜ୍ଝଟିକା ନଗରଯାକ ବ୍ୟାପିଗଲା । ପ୍ରତାପ ସିଂହଙ୍କ ବିଷାଦର ସୀମା ନାହିଁ ।

Digitized by srujanika@gmail.com

ସୁବର୍ଣ୍ଣବାଈ ଏହା ଶୁଣିବାମାତ୍ର ହାହାକାର କରିବାପରେ ଭୂତଳ ପତିତା ଓ ମୂର୍ଚ୍ଛିତା ହେଲେ ଏବଂ ସଂଜ୍ଞା ପ୍ରାପ୍ତହୋଇ ଅନ୍ନପାନାଦି ପରିତ୍ୟାଗ ପୂର୍ବକ ଚିନ୍ତା ପ୍ରପୀଡିତ ହୃଦୟରେ କାଳହରଣ କରିବାକୁ ଲାଗିଲେ । ସେଦିନ ମହମ୍ମଦୀୟ ଶିବିର ମହାନନ୍ଦ ପୂର୍ଣ୍ଣ ଓ ରାଜପୁତ ଶିବିର ଦୁଃଖମଗ୍ନ ହେଲା । ପରଦିନ ପୂର୍ବାହ୍ନ ଚକ୍ରବର୍ତ୍ତୀ ମଦନ ସିଂହ କାରାରୁଦ୍ଧ ଥିବା ଜାଣିପାରି, ଗୋଟିଏ ଆସନରେ ବସି, ମଦନ ସିଂହଙ୍କୁ ସମ୍ମୁଖକୁ ଆଣିବାକୁ ଆଦେଶ ଦେଲେ । ଭୃତ୍ୟମାନେ ତତ୍କ୍ଷଣାତ୍ ଆଜ୍ଞାପାଳନ କଲେ । ମଦନ ସିଂହ ନିର୍ଭୟରେ ସେହି ମ୍ଳେଚ୍ଛ ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ତାହାଙ୍କ ଧୈର୍ଯ୍ୟଶକ୍ତି ମନେ ମନେ ପ୍ରଶଂସାକରି ମ୍ଳେଚ୍ଛପତି ତାହାଙ୍କୁ ନମ୍ରମତେ କହିଲେ;—

"ଅରେ ! କାଫର ! ରାଜପୁତ ! ତୁ ଅମ୍ଭ କରଗତ ହେଲୁ । ଯଦି ତୁ ନିଜ ପ୍ରାଣ ରକ୍ଷାକରିବାକୁ ଚାହୁଁ, ତେବେ ଆମ୍ଭର ଅଭିଳଷିତ କାର୍ଯ୍ୟ ସାଧନକର । ପଦ୍ମିନୀକୁ ଆମ୍ଭଙ୍କୁ ସମର୍ପଣ କରିଦେବାକୁ ତୁମ୍ଭ ଭୀମ ସିଂହକୁ ଉପଦେଶ ଦେଇ ଆମ୍ଭର ମନ ସଫଳ କରାଅ । ତଦ୍ରୂପ କରାଇଲେ ତୋହର ପ୍ରାଣ ରହିବ; ଭୀମସିଂହ କାରାମୁକ୍ତ ହେବ ଏବଂ ତତେ ଉଚ୍ଚପଦ, ଓ ଅମୂଲ୍ୟ ପୁରସ୍କାର ଦିଆଯିବ । ନୋହିଲେ ତତେ ନିଶ୍ଚେ ପ୍ରାଣଦଣ୍ଡ ଦିଆଯିବ । ତୋହର ସୁନ୍ଦର ଶରୀର ଓ ଅଦ୍ଭୁତ ପରାକ୍ରମ ଦେଖି ଆମ୍ଭମନରେ କରୁଣାରସ ଉଦିତ ହେଉଅଛି ! ତୁ ମରଣ ଲୋଡ଼ୁଅଛୁ ନା ପ୍ରାଣରକ୍ଷା କରିବାକୁ ଇଚ୍ଛାକରୁ ?" ଚକ୍ରବର୍ତ୍ତୀ ଏହିରୂପ କହନ୍ତେ ମଦନ ସିଂହ କୋପଦ୍ଦୀପିତ ହୋଇ, ନେତ୍ରଦ୍ୱୟ ପ୍ରଜ୍ୱଳିତ ଅଗ୍ନିଖଣ୍ଡ ପରି ଓ ମୁଖାରବିନ୍ଦ ରକ୍ତ ବର୍ଣ୍ଣକରି, ନିଜେ ପରବଶହେବା, ଏବଂ ମ୍ଳେଚ୍ଛ ପତିର ସ୍ୱାଧୀନ ହୋଇଥିବା ଓ ତଦ୍ଧେତୁ ମରଣ ସମ୍ପ୍ରାପ୍ତିହେବା ଇତ୍ୟାଦି ବିଷୟ ବିସ୍ମରଣକରି ନିର୍ଭୟ ଚିତ୍ତରେ ଏହିରୂପ ପ୍ରକାଶ କଲେ;—

"ଛି, ଛି ! ଇଦୃଶ ଦୁଷ୍ଟାଲାପ ଆଉ କରନାହିଁ । ତୁ ପୌରୁଷବନ୍ତ ଓ ମାନାଭିମାନ ବିଶିଷ୍ଟ ବୋଲି ମୁଁ ବିଚାର କରିଥିଲି କିନ୍ତୁ ଏଡ଼େ ନୀଚଲୋକ ବୋଲି କେବେ ଜାଣି ନଥିଲି । ତୁ ଭୀମ ସିଂହ ମହାରାଜାଙ୍କ ପତ୍ନୀ ମହା ପତିବ୍ରତା ପଦ୍ମିନୀଙ୍କୁ ପାଇବାର ଆଶା କରୁଅଛୁ । ଆମ୍ଭେ ଉତ୍ତମ କ୍ଷତ୍ରିୟ ବଂଶ ସମ୍ଭୂତ, ତୁ ଦୁରନ୍ତ ତାତାର ଜୋହିଁ । ନାନାଭିମାନ ଅମ୍ଭ ମାତା ପିତା । "ପ୍ରାଣଦଣ୍ଡ-

Digitized by srujanika@gmail.com

ଦେବ" ବୋଲି ତୁ ଡରିଥିବା ମାତ୍ରେ ତୁଚ୍ଛ ପ୍ରାଣକୁ ଭୟକରି ନୀଚକର୍ମ ସାଧନ କରିବ ବୋଲି ତୁ ବିଚାରୁଅଛୁ ପରା ? ଇଦୃଶ ଅସତ୍ ବ୍ୟବହାର କରି ଜୀବନ ରଖିବା ଅପେକ୍ଷା କ୍ଷତ୍ରିୟକୁଳ ସୁଲଭ ମରଣ ଲଭିବା ଶ୍ରେୟସ୍କର । ଯଦି ଶରୀରରେ ପରାକ୍ରମ ଅଛି, ତେବେ ଏହି ଦୁର୍ଭାଷା ତ୍ୟାଗକରି ଶସ୍ତ୍ରହସ୍ତହୋଇ ଜାତିର ପୁଂଗବ ଚଢ଼ାଇ ଅସ୍ପୃଷ୍ଟ ଯୁଦ୍ଧ କର ।" ଏପରି ନାନାମତେ ମଦନ ସିଂହ ନିନ୍ଦା କରିବାର ଶ୍ରବଣକରି, ଚକ୍ରବର୍ତ୍ତୀ ଅତ୍ୟନ୍ତ କଷ୍ଟ ଓ ପ୍ରଜ୍ୱଳିତ କୋପର ବଶୀଭୂତହୋଇ, "ଏହି ଦୁର୍ମତିକୁ ଅଚିରେ ବଧକର । ଏହାର ଜିହ୍ୱା କର୍ତ୍ତନକରି, ଲୌହ ଶଳାକ ରକ୍ତବର୍ଣ୍ଣକରି ତତାଇ ତହିଁରେ ଚକ୍ଷୁ ବିଦ୍ଧକର, ପରିଶେଷରେ ଶିରଶ୍ଛେଦନ କରଅ " ବୋଲି ରହିମାନ ଖାନକୁ ଆଦେଶଦେଇ ଅଚିରାତ୍ ସେହି ତମ୍ବୁ ଯହିଁ ଭୀମସିଂହ ଥିବା ତମ୍ବୁକୁ ପ୍ରସ୍ଥାନ କଲେ । କନ୍ଦର୍ପ ପୀଡ଼ାରେ ଚକ୍ରବର୍ତ୍ତୀଙ୍କର ଯୋଗ୍ୟାଯୋଗ୍ୟ ବିବେକ ବିନଷ୍ଟ ହୋଇ ଥିବାରୁ ସେ ଭୀମସିଂହଙ୍କ ସମ୍ମୁଖବର୍ତ୍ତୀ ହୋଇ ନିଜ ହୃଦୟପଦ୍ମରେ ଲାଗି ରହିଥିବା ପଦ୍ମିନୀର ବାଞ୍ଛିତ ସମ୍ପାଦନ କରିଦେବା ପାଇଁ ଭୀମସିଂହଙ୍କୁ ପ୍ରାର୍ଥନା କରିବସିଲେ । କୀଚକ କଥାରେ ଭୀମସେନଙ୍କ ପରି ଚକ୍ରବର୍ତ୍ତୀ ବଚନରେ ଭୀମସିଂହ ରୌଦ୍ର ରସ ପରିପୂର୍ଣ୍ଣ ହୋଇ କହିଲେ " ଅପକୀର୍ତ୍ତି ଅର୍ଜନ କରି ଚିରକାଳ ଜୀଇଁବା ଠାରୁ କୀର୍ତ୍ତିଲଭି ମୃତ୍ୟୁ ସମ୍ପାଦନ କରିବା ଉତ୍ତମ । ରାଜପୁତ ବଂଶର ଶୋଣିତ ଏହି ଶିରା ପ୍ରଶିରାରେ ପ୍ରବାହିତ ହେବା ଯାଏ ଏବଂ ଏହି କଣ୍ଠରେ ପ୍ରାଣ ଥିବା ପର୍ଯ୍ୟନ୍ତ ଭୀମସିଂହ ମରଣକୁ ଭୟ କରି ନୀଚ ପିଶାଚକୁ ସ୍ୱୋଳାପିତ କରିବା କଥା ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ କରନାହିଁ । ମୋହର ପକ୍ଷେ 'ମରଣ' ପଦ ବିଶେଷ ଭୟର କାରଣ ନୁହେ । ମତେ ମରଣ ଘଟୁ, କିମ୍ବା ରାଜପୁତ ବଂଶ ସମୂଳେ ନିପାତ ହେଉ, ମୁଁ ଏହି ନୀଚ କୃତ୍ୟ ସାଧନ କରି ନପାରେ ।" ଭୀମସିଂହଙ୍କ ଏହି ଉତ୍ତର ଶ୍ରବଣକରି ମ୍ଳେଚ୍ଛ ଚକ୍ରବର୍ତ୍ତୀ ମଦନସିଂହ ଓ ଭୀମସିଂହ ଉଭୟଙ୍କ ପ୍ରାଣ ଦଣ୍ଡ ଦେବାକୁ ଦୃଢ଼ ସଙ୍କଳ୍ପ କଲେ । ଅତଏବ ମଦନସିଂହଙ୍କୁ ତତ୍‌କ୍ଷଣେ ବଧକରି ତହିଁ ଆରଦିନ ଭୀମସିଂହଙ୍କୁ ପ୍ରେତାଳୟବାସୀ କରାଇବାକୁ ରହିମାନ ଖାନକୁ ଆଦେଶ ଦେଲେ । କିନ୍ତୁ ସେହିଦିନ ଆଉ କତିପୟ ଭଦ୍ରବ୍ୟକ୍ତିଙ୍କ ପରାମର୍ଶରେ ଭୀମସିଂହଙ୍କୁ ପ୍ରାଣଦଣ୍ଡ ନଦେବାପାଇଁ

Digitized by srujanika@gmail.com

ଷ୍ଠିତ ହେଲେ । ଏତେ କଥା ଚଳିଲେ ମୁଖ୍ୟ ପତ୍ନୀ ପ୍ରତି ପୋଷଣ କରିଥିବା ଦୁରାଶା ବଳବତୀ ହୋଇ ନଥିବାରୁ, ଭୀମସିଂହଙ୍କୁ ପ୍ରାଣଦଣ୍ଡ ଦିଅଇଲେ । ନିଜ ଅଭିଳାଷ ପୂର୍ଣ୍ଣ ହେବା ଅସାଧ୍ୟ ବୋଲି, ଏବଂ ସେ ଜୀବିତ ଥିଲେ ରାଜପୁତ୍ର ମାନେ ଯେବେହେଲେ ପତ୍ନୀଙ୍କୁ ପଠାଇ ନିଜ ପ୍ରଜାଙ୍କର ପ୍ରାଣରକ୍ଷା କରିବାକୁ ଯତ୍ନ କରିବେ ବୋଲି ବିବେଚନା କରି ତାହାଙ୍କ ମରଣ ଦଣ୍ଡ ସ୍ଥଗିତ କରାଇଲେ । କିନ୍ତୁ ମଦନସିଂହଙ୍କ ମରଣ ଦଣ୍ଡ ତହିଁ ଆରଦିନକୁ ନିଶ୍ଚିତ ହେଲା । ସେହି ଘୋରକାଣ୍ଡ ଚଳାଇବା ସକାଶେ ରହିମାନ୍ ଖାଁନ୍ ନିଯୁକ୍ତ ହେବାରୁ ତାହାର ଆନନ୍ଦର ସୀମା ରହିଲାନାହିଁ । ସେହିକ୍ଷଣି ଲୌହ ଶାବଳ ଅଣାଇ ରକ୍ତବର୍ଣ୍ଣ କରି ତତାଇଲା । ସେହିଦିନ ସନ୍ଧ୍ୟାସମୟରେ ଜଣେ ଆସି ରହିମା-ନ୍‌କୁ କହିଲା । "ସ୍ୱାମି; ହେମଲତା ଚନ୍ଦ୍ରସେନଙ୍କ ତମ୍ବୁରେ ରହି ଅଛି, ଯେ ଦିନ ରାଜ ଚନ୍ଦ୍ରସେନ ତାହାକୁ ଘେନି ଗଲ ବୋଲି ଶୁଣିଥିଲି । ଏଥିକୁ ଆପଣଙ୍କ ଆଦେଶ ।" ଏହି କଥା ଶୁଣି ସୁଦୂରସ୍ଥ ତୀର୍ଥ ସମ୍ମୁଖବର୍ତ୍ତୀ ହେଲା ପରି ନିଜ ହୃଦୟଗତା କନ୍ୟା ଶିବିରସ୍ଥ ଜାଣି ପରମ ସନ୍ତୋଷ ଲାଭ କରି ରାଜ ଦୁଇ ଘଡ଼ି ରାତ୍ରାରୁ ଅଶ୍ୱାରୋହଣ ପୂର୍ବକ ଚନ୍ଦ୍ରସେନଙ୍କ ନିବାସ ସ୍ଥାନକୁ ଗାଁ ପ୍ରସ୍ଥାନ କଲା ଏବଂ ଚନ୍ଦ୍ରସେନଙ୍କୁ ଡାକି ହେମଲତାକୁ ଆପଣାକୁ ସମର୍ପଣ କରି ଦେବାକୁ ପ୍ରାର୍ଥନା କଲା । ଚନ୍ଦ୍ରସେନ ତାହାର ମୂଢ଼ତା ଓ ଦୁଷ୍ପ୍ରବର୍ତ୍ତନା ବିଷୟରେ ବିଶେଷ ଆଶ୍ଚର୍ଯ୍ୟ ଓ ଉତ୍ତେଜିତ ହୋଇ କହିଲେ "ଆମ୍ଭେ କ୍ଷତ୍ରୀୟ, ତୁମ୍ଭେ ମହ-ମ୍ମଦୀୟ, ଆମ୍ଭ କନ୍ୟାକୁ ଦେବା ପାଇଁ କେଉଁ ରୂପ ପ୍ରକାଶ କରୁଅଛ, ଯା ! ଦୂର ହୁଅ, ଇଦୃଶ ଦୁଷ୍ଟାଲୋଚନାଗୁଡ଼ିକ ତ୍ୟାଗ କର । ନଚେତ୍ ଆମ୍ଭେ ଚକ୍ରବର୍ତ୍ତୀଙ୍କ ପାଖେ ଏହି ବିଷୟ ଜଣାଇବୁ ।" ରହିମାନ୍ ଏହି ଉତ୍ତର ପାଇ ଭଗ୍ନମନୋ-ରଥ ହୋଇ ଘରକୁ ଫେରି ଯାଇ ଚିନ୍ତା କରି ବସି ରହିଲା । ତେଣେ ଚନ୍ଦ୍ର-ସେନ ତତ୍କ୍ଷଣେ ଚକ୍ରବର୍ତ୍ତୀଙ୍କ ନିକଟକୁ ଯାଇ ସବିନୟରେ ସକଳ ବୃତ୍ତାନ୍ତ ଜଣା-କଲେ । ରହିମାନ ଖାଁଙ୍କ ଦୌର୍ଜନ୍ୟ ଶ୍ରବଣ କରି କୁପିତ ହୋଇ, ଚନ୍ଦ୍ର-ସେନଙ୍କୁ ବିଦାୟ ଦେଇ ଖାଁଙ୍କୁ ଡ଼କାଇ କଠିଣଭାବରେ ତିରସ୍କାର କଲେ । ଖାଁ ନିଜ ଦୋଷ ଲୁଚାଇବା ସକାଶେ ଉପାୟ ବିବେଚନା କରି ଅତି କୌଶଳରେ କହିଲା, "ମହାରାଜ ! ଚନ୍ଦ୍ରସେନଙ୍କ ଅଧୀନସ୍ଥ ବାଳିକା, ଜଣେ ସ୍ୱର୍ଗର ଅପ୍ସରା

Digitized by srujanika@gmail.com

ଓ ପଦ୍ମିନୀଙ୍କ ପର ସୁନ୍ଦରୀ । ସେ ପଦ୍ମିନୀର ଜଣେ ବନ୍ଧୁ ବୋଲି ଶୁଣି ତାହାଙ୍କୁ ଆପଣାଙ୍କ ସକାଶ ଆଣିବା ଲାଗି ମୁଁ ଯାଇଥିଲି । ମୋହପାଇଁ ମୁଁ ସେହି କନ୍ୟାକୁ ମାଗି ନାହିଁ ।” ଏହି କଥା ଶୁଣି ଖାଁଙ୍କ ପ୍ରତି କୃପା ପ୍ରକାଶ କରି ବିଦାୟ ନେବାକୁ କହି ତତ୍କ୍ଷଣେ ଚନ୍ଦ୍ରସେନଙ୍କୁ ପୁନର୍ବାର ଡକାଇ ହେମଲତାକୁ ନିଜ ଶିବିରକୁ ଧରି ଆସିବା ପାଇଁ ତାହାଙ୍କୁ ଆଦେଶ ଦେଲେ । ଏହି ଆଜ୍ଞା ଶ୍ରବଣ କରି ଚନ୍ଦ୍ରସେନ ନିରୁତ୍ତର ହୋଇ ଏସବୁ ଖାଁଙ୍କ ମାୟାର ଫଳ ବୋଲି ଜାଣି ଚକ୍ରବର୍ତ୍ତୀଙ୍କୁ କିଛି କହି ନପାରି “ଆଚ୍ଛା ହେଉ” ବୋଲି ସେହି ସ୍ଥାନରୁ ପ୍ରସ୍ଥାନ କଲେ । ମାର୍ଗ ମଧ୍ୟରେ “ଆହା ! ଏତେ ଦିନ ସେହି ନିରୀହା ରାଜକନ୍ୟାର ଗୌରବ ଓ ମହତ୍ତ୍ୱ ରକ୍ଷା କରି, ପରିଶେଷରେ ଏହି ନିଷ୍ଠୁରାତ୍ମା ମହମ୍ମଦାୟ ଚକ୍ରବର୍ତ୍ତୀଙ୍କୁ ସମର୍ପଣ କରିବାକୁ ହେଲା” ବୋଲି ବିଶେଷ ଚିନ୍ତା କରି ଘରେ ପହଞ୍ଚି ଏହି ବାର୍ତ୍ତା ନିଜ ପତ୍ନୀ ଦମୟନ୍ତୀ ଓ ହେମଲତାକୁ ଜଣାଇଲେ । ହେମ ଏହି କଠୋର ବାର୍ତ୍ତା ଶ୍ରବଣ କରି “ଦୀନଜନଙ୍କ ଗୁହାରି ଶୁଣିବା ଲାଗି ଓ ସ୍ତ୍ରୀ ଜାତିର ଅମଙ୍ଗଳକାରୀଙ୍କୁ ଦଣ୍ଡ ଦେବା ଲାଗି ରାଜଦଣ୍ଡଧାରୀ ଚକ୍ରବର୍ତ୍ତୀ ନିଜେ ସ୍ତ୍ରୀ ଜାତିକୁ ଅତ୍ୟାଚାର କରିବାକୁ ବସିଥିବାଠାରେ ମୋହର ମାନ ରକ୍ଷା ହେବା ଦୁର୍ଘଟ ବୋଲି” ନିଶ୍ଚୟ କରି ଦୈବଠାରେ ସକଳ ଭାର ରଖି ମହାନ୍ ମହାନ୍ ଲୋକଙ୍କର ଆଶ୍ରୟ ନେଲେ ସୁଦ୍ଧା ନିଜର ଦୁରବସ୍ଥାର ଅନ୍ତ ହେଲା ନାହିଁ ବୋଲି” ରାତଯାକ ଚିନ୍ତା କରି ରହିଲେ ।



## ସପ୍ତଦଶ ଅଧ୍ୟାୟ



ରେ ବିଧାତା ! କାହିଁକି ମତେ ଏତେ ଦୁର୍ଭାଗିନୀ କରି ଜନ୍ମ ଦେଇ-

Digitized by srujanika@gmail.com

ଥିଲୁ ? ଅତି ଗୌରବାନ୍ୱିତ ଓ ପନ୍ନସ ରାଜବଂଶରେ ଜନ୍ମ ଗ୍ରହଣ କରି, ପରି-
ଶେଷରେ ଅତ୍ୟନ୍ତ ଦୁର୍ଦ୍ଦଶାବତୀ ହୋଇ ଶିବପ୍ରସାଦ ଘରେ କେତେ ଦିନ, ଚନ୍ଦ୍ର-
ସେନଙ୍କ ଗୃହରେ ଆଉ କେତେ ଦିନ ଗୋଟି ରହି, ଦୁରନ୍ତମାନଙ୍କ କର୍ତ୍ତୃକ ଅପମାନ
ସହ୍ୟ କଲେ ସୁଦ୍ଧା କିହେତୁ ମତେ ମରଣ ହେଉ ନାହିଁ ? ହା ! ଦାଦା ! ତୁମ୍ଭେ
କେଉଁଠାରେ ଅଛ ? ଆହା ! ଗର୍ଭଧାରିଣୀ ଜନନି ! ମୋହର ବାଲ୍ୟକାଳରେ
ତୁମ୍ଭର ମରଣ ହୋଇ ଥିବାରୁ ମତେ ଏହି ଦୁର୍ଦ୍ଦଶା ଘଟିଲା ପରା ! ଓହୋ !
ମନର ଦୁଃଖ ଜଣାଇବାକୁ ପାଖରେ କେଣେ କେହି ଆତ୍ମୀୟ ସୁଦ୍ଧା ନାହିଁ । ଆହା !
ମୁଁ କଣ କରିପାରିବି ? ହେ ମରଣ, ତୁମ୍ଭେ ମୋହର ଶରଣ ହୁଅ । ବଳପୂର୍ବକ ଚକ୍ର-
ବର୍ତ୍ତୀ ମୋହର ମାନଭଙ୍ଗ କରିବାଠାରୁ ସମର୍ଯ୍ୟାଦାରେ ମୃତ୍ୟୁ ଲଭିବା ଶ୍ରେୟସ୍କର ।"
ହେମଲତା ମନେ ମନେ ଏହିରୂପ ଚିନ୍ତା କରୁଅଛନ୍ତି ଏମନ୍ତ ସମୟରେ ଚନ୍ଦ୍ରସେନ
ଚକ୍ରବର୍ତ୍ତୀ ହୋଇ ସେହି ଅବଳାର ମାନ ରକ୍ଷା କରିବାକୁ ନିଜେ ଅକ୍ଷମ ହୋଇ
ଥିବାରୁ ଦୁଃଖ ପ୍ରକାଶ କରି କହିଲେ, "ମା ! ଆଜ ଦିନ ଅବଶ୍ୟ ତତେ ଧରି
ନିବାକୁ ଚକ୍ରବର୍ତ୍ତୀ ପୁନର୍ବାର ମୋହଠାକୁ ସମ୍ବାଦ ପଠାଇ ଅଛନ୍ତି । ଏହି କଥା
ତତେ କହି ନପାରି ମୁଁ ଚିନ୍ତା କରି ବସିଅଛି । କଅଣ କରିବି ମତେ ବୁଦ୍ଧି
ଦିଶୁ ନାହିଁ । ତୋହର ଲାଗି ପ୍ରାଣଦାନ କରିବାକୁ ମୁଁ ସିଦ୍ଧ ଅଛି । ମୋହର
ଶରୀରରେ ପ୍ରାଣ ଥିବା ଯାଏଁ ତତେ ଅପମାନ ହେବ ନାହିଁ । ତୁ ଭୟ କର
ନାହିଁ ।" ଚନ୍ଦ୍ରସେନଙ୍କ ଏହି ଅମୃତମୟ ବଚନାବଳି କର୍ଣ୍ଣପାତ ହୁଅନ୍ତେ,
ହେମଲତା ଗାତ୍ରୋତ୍ଥାନ କରି କହିଲେ "ଏହି ଛାର ଜୀବନ ପାଇଁ ଆପଣ କାହିଁକି
ପ୍ରାଣଦାନ କରିବେ ? ମତେ ଅପମାନ ସମ୍ଭବିବା ପକ୍ଷରୁ ମୋହର ହସ୍ତସ୍ଥିତ ବଜ୍ର
ଚୂର୍ଣ୍ଣକରି ଭକ୍ଷଣ କରିବା ସକାଶେ ମୁଁ ସିଦ୍ଧ ହୋଇଅଛି । ମୋହର ଏହି ହୀରକ-
ଖଚିତ ଅଙ୍ଗୁରୀୟ ମୋହର ମାନ ରକ୍ଷା କରି ପାରିବ । ଆହା ! ସେହି କାରା-
ଗୃହରେ ପରଲୋକଗତ ମୋହ ପ୍ରପିତାମହଙ୍କ ସୁସଙ୍ଗ ମୁଁ ଅଚିରେ ପାଇ ପାରିବି ।"
ଏହିରୂପ ଆତ୍ମହତ୍ୟା କରିବାକୁ ଦୃଢ଼ ସଙ୍କଳ୍ପ କରିଥିବା ସୁନ୍ଦରୀଙ୍କୁ ପ୍ରତ୍ୟୁତ୍ତର
ଦେଇ ନପାରି "ଆଉ ଥରେ ତୋହପାଇଁ ଚେଷ୍ଟା କରିବି" ବୋଲି କହି
ଚନ୍ଦ୍ରସେନ ସଜଳ ନୟନରେ ସେହି ସ୍ଥାନରୁ ଅନ୍ତର୍ହିତ ହେଲେ । ହେମଲତା

Digitized by srujanika@gmail.com

ପ୍ରତକ୍ଷଣ ଚନ୍ଦିବର୍ତ୍ତୀଙ୍କଠାରୁ ପାଇକ ଅସିବ ବୋଲି ଭାବ ମୃତ୍ୟୁ ଦେବତାଙ୍କୁ ଅପେକ୍ଷା କରି ବସିଥିଲେ ।

ସେହିଦିନ ମଦନ ସିଂହଙ୍କ ମରଣ ମହୋତ୍ସବ ହେବ ବୋଲି ରହିମାନଖାଁ ମହା ଆନନ୍ଦରେ ନିମଗ୍ନଥିଲା ଏବଂ ହେମଲତା ନିଜର ଅଭିଲାଷ ସାଧନ କରିବାକୁ ଅସମ୍ମତ ହେବାରୁ ତାହାକୁ ଯାଁଥିବାକୁ ଚନ୍ଦିବର୍ତ୍ତୀଙ୍କୁ ଲଗାଇ ଦେଇ ପାରିଥିବାରୁ ଦ୍ୱିଗୁଣ ସନ୍ତୋଷ ଲାଭ କରିଥିଲା । ବେଳ ଏକ ପ୍ରହର ଉତ୍ତାରୁ ପୂର୍ବୋକ୍ତ-ମତେ ମଦନ ସିଂହଙ୍କୁ ବଧ କରିବା ସକାଶେ ଚନ୍ଦିବର୍ତ୍ତୀ ଖାଁଙ୍କଠାରୁ ଆଦେଶ ପଠାଇଲେ । ସେହିକ୍ଷଣି ଖାଁ ଉତପ୍ତ ଲୌହ ଶାବଳ ଦୁଇଜଣ ସେବକଙ୍କ ହାତେ ଧରାଇ, ମଦନ ସିଂହଙ୍କ ନିବାସ ଗମ୍ଭୁକୁ ଯାଇ, ମଦନ ସିଂହଙ୍କୁ ଅନାଇ ମରଣକୁ ସିଦ୍ଧ ରହ ବୋଲି କହନ୍ତେ, "ମରଣ ମୋହ ପକ୍ଷରେ ତୃଣବତ୍, ସେଥିଲାଗି ମୁ ସିଦ୍ଧ ଅଛି" ବୋଲି ମଦନ ସିଂହ ସଧୈର୍ଯ୍ୟରେ ଖାଁଙ୍କୁ ଉତ୍ତର ଦେଲେ । ଏହି ଉତ୍ତର ପାଇ ଖାଁ ଦନ୍ତ ଘର୍ଷଣ କରି, ସେହି ଲୌହ ଶାବଳରେ ତାହାଙ୍କ ଚକ୍ଷୁ ବନ୍ଧ କରିବାକୁ ସେବକମାନଙ୍କୁ ଆଦେଶ ପ୍ରଦାନ କଲା । ସେବକମାନେ ସ୍ବଭାବ ନରହତ୍ୟାଦି ଦୁଷ୍କ କାର୍ଯ୍ୟ ସାଧନରେ ଧୁରନ୍ଧର ହୋଇଥିବା ଯୋଗୁଁ, ଖାଁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଉତ୍ତପ୍ତ ଲୌହ ଧାରଣ କରି ମଦନ ସିଂହଙ୍କ ନିକଟବର୍ତ୍ତୀ ହେଲେ । ଏବଂ ନିଜ ମଦନ ସିଂହକୁ ପଛକୁ ଠେଲି ତଳେ ପକାଇ ଦଅନ୍ତେ ଦୁଇଜଣ ସେବକ ତାହାଙ୍କ ହାତ ଗୋଡ଼ କଠିଣରେ ବନ୍ଧନ କଲେ । ମଦନ ସିଂହ ଏମନ୍ତ ସମୟରେ ପରମେଶ୍ୱରଙ୍କୁ ଧ୍ୟାନ କରି ନିଶ୍ଚଳଭାବେ ରହିଲେ । ରହିମାନଖାଁ ସମୀପବର୍ତ୍ତୀ ହୋଇ "ଏବେ ହେଲେ ଚନ୍ଦିବର୍ତ୍ତୀଙ୍କ କଥା ରଖ, ତୋହର ପ୍ରାଣ ରକ୍ଷା ହେବ । ସେହିପରି କରି ପାରିବୁ କି ?" ବୋଲି କହନ୍ତେ ମଦନ ସିଂହ ନିର୍ଭୟରେ ଉତ୍ତର ଦେଲେ "ମୁ ସେପରି କରି ନପାରେ । ତୋହର ଯାହା ଇଚ୍ଛା ତାହା କର ।" ତେବେ ସେବକମାନେ ତପ୍ତ ଲୌହକୁ ଚକ୍ଷୁ ନିକଟକୁ ନେଇ ସେହି ଅମୂଲ୍ୟ ଦର୍ଶନେନ୍ଦ୍ରିୟ ଦଗ୍ଧ କରିବାକୁ ସିଦ୍ଧ ହେଲେ । ଏମନ୍ତ ସମୟରେ ଜଣେ ସେବକ ଦଉଡ଼ି ଆସି ଉଚ୍ଚୈଃ-ସ୍ୱରରେ ପ୍ରଳାପ କଲା " ରହ, ରହ, ବଧ କରନାହିଁ, ବଧ କରନାହିଁ " ଏହି କଥା ଶୁଣି ଖାଁ ପଛକୁ ଚାହିଁ ସେହି ପ୍ରଳାପ କାହିଁକି କଏ ବୋଲି ପ୍ରଶ୍ନ

Digitized by srujanika@gmail.com

କରନ୍ତେ, ସେ ଉତ୍ତର ଦେଲା " ଚକ୍ରବର୍ତ୍ତୀଙ୍କ ଆଜ୍ଞା ହୋଇଅଛି ଏହାଙ୍କୁ ବଧ କରିବାକୁ ହେବନାହିଁ । ତୁମ୍ଭଙ୍କୁ ତକ୍ଷଣେ ଚକ୍ରବର୍ତ୍ତୀଙ୍କ ସମ୍ମୁଖକୁ ଯିବାକୁ ହେବ । ଏହି କଥା ଶୁଣି ଖାଁନ୍ ସେହି ଭୀଷଣକାର୍ଯ୍ୟ ସ୍ଥଗିତ କରି ମଦନ ସିଂହଙ୍କୁ ବନ୍ଧନ ମୁକ୍ତ କରାଇ ଅତିଶୀଘ୍ର ଚକ୍ରବର୍ତ୍ତୀଙ୍କ ଶିବିରକୁ ଗମନ କଲା । ସେହିଠାରେ ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ଜଣେ ରାଜପୁତ୍ର ବସିଥିବାର ଦେଖିଲା । ଖାଁଙ୍କୁ ଦେଖିବା ଲକ୍ଷଣେ ଚକ୍ରବର୍ତ୍ତୀ ରାଜପୁତ୍ର ଆଡ଼କୁ ଅନାଇ ଦୂତର ବକ୍ତବ୍ୟ ସ୍ପଷ୍ଟରୂପେ ଜଣାଇବାକୁ ଆଜ୍ଞା ଦେଲେ । ଦୂତ—କାର୍ଯ୍ୟ ପରିଚାଳନ କରିବାରେ ସୁଦକ୍ଷ ଦୁର୍ଗସିଂହ ନାମ୍ନ ମନେ କହିଲା—" ମହାପ୍ରଭୁ ! ଆମ୍ଭ ରାଣା ଓ ଶ୍ରୀମତୀ ପଦ୍ମାଦେବୀ ଆପଣଙ୍କୁ ଜଣାଇବାକୁ ଯେଉଁ ବିଷୟମାନ କହି ଅଛନ୍ତି ତାହା ସ୍ୱତନ୍ତ୍ର ଜଣାଇ ଦେବ, ଶୁଣିବା ହେଉ । ଆପଣ ଭୀମସିଂହ ଓ ମଦନସିଂହଙ୍କୁ କାରାମୁକ୍ତ କରି ଦେଲେ ପଦ୍ମନୀ ଦେବୀ ଆପଣଙ୍କ ସ୍ତ୍ରୀ ହେବାକୁ ସ୍ୱୀକାର କରି ଅଛନ୍ତି । ନିଜ ପତିର ପ୍ରାଣ ରକ୍ଷା କରିବା ସକାଶେ ପଦ୍ମନୀ ନିଜଶରୀର ଦାନ କରିବାକୁ ସିଦ୍ଧ ହୋଇ ଅଛନ୍ତି । " ଦୁର୍ଗସିଂହଙ୍କ ମୁଖରୁ ଏହି ସମ୍ବାଦ ପାଇ ଚକ୍ରବର୍ତ୍ତୀ ଅନନ୍ତାନନ୍ଦ ପରବଶ ହୋଇ, ଅବନ ପରିଧାନ ପୂର୍ବକ ରହିମାନ୍ ଖାଁଙ୍କୁ କୋଲାଗତ କରି ଦୁର୍ଗସିଂହଙ୍କ ବହୁ ପ୍ରଶଂସା କଲେ । ପରେ ଦୁର୍ଗସିଂହ ଜଣାଇଲେ, " ମହାରାଜ ! ପଦ୍ମନୀଙ୍କ ସହିତ ନଗରସ୍ଥ ବହୁ ସଂଖ୍ୟକ ଦାସୀ ମାନେ ପାଲିଙ୍କିରେ ଆସି, ପଦ୍ମନୀଙ୍କୁ ଆପଣଙ୍କ ହସ୍ତରେ ସମର୍ପଣକରି ଦେବେ । ସେମାନଙ୍କ ସଂଖ୍ୟା ପ୍ରାୟ ସପ୍ତଶତ ହୋଇପାରେ । ସେମାନେ ଅନ୍ତଃପୁରବାସିନୀ ଅଟନ୍ତି । ଅତଏବ ଆପଣ ସେମାନଙ୍କ ପାଇଁ ଗୋଟିଏ ଭିନ୍ନ ଶିବିର ନିର୍ମିତ କରାଇ ସେମାନେ ମହମ୍ମଦୀୟ ମାନଙ୍କ ଦୃଷ୍ଟିରେ ନପଡିଲା ପରି ବନ୍ଦୋବସ୍ତ କରାଇ ଦେବେ । " ଏହି କଥା ଶୁଣି ଚକ୍ରବର୍ତ୍ତୀ ହର୍ଷରେ ଛାତି ଫୁଲାଇ କହିଲେ " ଓହୋ ! ସେଥିରେ କି ସନ୍ଦେହ ଅଛି, ଆମ୍ଭେ ସମସ୍ତ ବନ୍ଦୋବସ୍ତ କରି ଦେବୁଁ । ସେମାନଙ୍କ ପାଇଁ ବିଶେଷ କାରିଗର ନେବୁଁ । ଶୀଘ୍ର ଆସ ବୋଲି କହ । ତୁମ୍ଭେ ଯାଇ ଶୀଘ୍ର ସେମାନଙ୍କୁ ପଠାଇ ଦିଅ" । ପରେ ଦୁର୍ଗସିଂହ ବିଦାୟ ଗ୍ରହଣ କରନ୍ତେ ଚକ୍ରବର୍ତ୍ତୀ ନିଜ କଣ୍ଠରୁ ରତ୍ନହାର ବାହାର କରି ପୁରସ୍କାର ସ୍ୱରୂପ ଦୁର୍ଗସିଂହଙ୍କୁ ପ୍ରଦାନ କଲେ । ଦୁର୍ଗସିଂହଙ୍କ ପ୍ରସ୍ଥାନ କାଳାବଧି

Digitized by srujanika@gmail.com

ଚକ୍ରବର୍ତ୍ତୀ ପଦ୍ମିନୀ ଠାରେ ମନପ୍ରାଣ ରଖି ଖର ମଦନାଗ୍ନିରେ ତାପିତ ହେଲେ । କେବେ କେବେ ସନ୍ତୋଷରେ ଉନ୍ମାଦ ଲୋକଙ୍କ ପରି ଚିତ୍କାର କରିବା, କେବେ କେବେ ସେବକ ମାନଙ୍କୁ ପୁରସ୍କାର ବଣ୍ଟନ କରିବା, ଏବଂ କେବେ କେବେ ବା ଅଶ୍ୱାରୋହଣ କରି ଏଣେ ତେଣେ ଭ୍ରମଣ କରିବା, ଏହି ରୂପ କନ୍ଦର୍ପ ବାଧାରେ ପୀଡ଼ିତ ହେଉଥିଲେ । ପଦ୍ମିନୀ ପ୍ରମୁଖ ରାଜସୁନ୍ଦରୀମାନେ ଶସ୍ତ୍ରହସ୍ତ ଭୁବସ୍ଥ ସୈନିକଙ୍କୁ ଦେଖି ଭୀତ ହେବେ ବୋଲି ସେନାଗଣ ନିରାୟୁଧ ହେବା ସକାଶେ ଚକ୍ରବର୍ତ୍ତୀ ଆଦେଶ ପ୍ରଦାନ କଲେ । ଏହି ଆଦେଶାନୁଯାୟୀ ଭୁବସ୍ଥ ସେନାଗଣ ନିରାୟୁଧ ହୋଇ, ଗଞ୍ଜାଇ ନିଶାରେ ଭୋଳ ହୋଇ ଗାଢ଼ ନିଦ୍ରାଭିଭୂତ ହେଲେ । ମଦନୋନ୍ମତ୍ତ ହୋଇ ମ୍ଲେଚ୍ଛ ପତିଙ୍କୁ ସେହି ଦିବସ ଅସର ହୋଇ ଉଠିଲା । ସେ କୁଳପୁରୋହିତ 'ଖୋଜା' ଙ୍କୁ ଓ ବହ୍ରମାନ୍ ଖାଁନଙ୍କୁ ଡକାଇ, ସେମାନଙ୍କ ସହିତ ଭାବୀପତ୍ନୀଙ୍କ ବିଷୟରେ ନାନାମତେ କଥୋପକଥନ କରି କିଞ୍ଚିତ୍ କାଳ ହରଣ କଲେ । ପରେ ପଦ୍ମିନୀ ସହିତ ନିଜର ପରିଣୟ ନିଶ୍ଚୟ ବୋଲି ବିଶ୍ୱାସ କରି, ଶୟନାଗାର ମଣ୍ଡନ କରିବାକୁ ଆଦେଶ ଦେଇ, ନିଜେ ନାନା ଅଳଙ୍କାର ଓ ବହୁମୂଲ୍ୟ ବସ୍ତ୍ରରେ ବିଭୂଷିତ ହେଲେ । ଦୁର୍ଗସିଂହଙ୍କ ଭୟହି ଲାଗି ଚକ୍ରବର୍ତ୍ତୀ ହେମଲତାର ବିଷୟ ବିସ୍ମରଣ କରି ସେହି ଦିନ ଚନ୍ଦ୍ରସେନଙ୍କ ଠାରୁ ସମ୍ବାଦ ଦେଲେ ନାହିଁ । କିନ୍ତୁ ସନ୍ଧ୍ୟା ସମୟରେ ଚନ୍ଦ୍ରସେନ ରାଜ ଦର୍ଶନ ପାଇଁ ଆସି, ପଦ୍ମିନୀର ଆଗମନ ବାର୍ତ୍ତା ଚକ୍ରବର୍ତ୍ତୀଙ୍କ ମୁଖରୁ ଶୁଣି, ହେମଲତାକୁ ଅପସୃତ କରିବାକୁ ଉତ୍ତମ ସମୟ ମିଳିଲା ବୋଲି ସନ୍ତୋଷ ଲଭି ଚକ୍ରବର୍ତ୍ତୀଙ୍କୁ କହିଲେ, "ମହାରାଜ ! ହେମଲତାକୁ ଧରି ଆସିବିକି ? ସେ ଆପଣଙ୍କ ନିକଟରେ ରହିଲେ ଆପଣଙ୍କର ବିଶେଷ କଷ୍ଟ ହେବ । କାରଣ, ମହାରାଜାଙ୍କପତ୍ନୀ ପଦ୍ମିନୀ ହେମଲତାର ସପତ୍ନୀ ହେବାକୁ ସ୍ୱୀକାର କରିବେ ନାହିଁ । ଏହି କାରଣ ଦର୍ଶାଇ ପଦ୍ମିନୀ ଫେରି ଯାଇ ପାରନ୍ତି ବୋଲି ମୋହର ଶଙ୍କା ହେଉଅଛି" । ଚନ୍ଦ୍ରସେନଙ୍କ ଯୁକ୍ତି ଶୁଣି "ହେମଲତା ମତେ ଦରକାର ନାହିଁ" ବୋଲି ଚକ୍ରବର୍ତ୍ତୀ ଆଜ୍ଞା ଦେଲେ । ବ୍ୟାଘ୍ର ମୁଖ ମୁକ୍ତ କୁରଙ୍ଗବତ୍ ସନ୍ତୋଷ ଲାଭ କରି ଚନ୍ଦ୍ରସେନ ବିଦାୟ ନେଇ ଏହି ବାର୍ତ୍ତା ନିଜ ସ୍ତ୍ରୀ ଓ ହେମଲତାକୁ ଜଣାଇ ସମସ୍ତେ ମହାନନ୍ଦରେ କାଳଯାପନ କଲେ । ସୁପ୍ତି ହେବା ମାତ୍ରେ

ଚକ୍ରବର୍ତ୍ତୀ ମିଷ୍ଟାନ୍ନ ଭୋଜନ କରି ତାମ୍ବୂଲାଦି ସେବନ ପୂର୍ବକ ପଦ୍ମିନୀର ଆଗମନ ନିରୀକ୍ଷଣ କରି ବସି ରହିଲେ । ରାଜ ସ୍ତ୍ରୀ ମାନଙ୍କ ପାଇଁ ଭିନ୍ନ ଶିବିର ନିର୍ମିତ ହୋଇ ସେମାନେ କାହାରି ଦୃଷ୍ଟିରେ ନପଡ଼ି ଭିତରେ ପ୍ରବେଶ କରିବା ବନ୍ଦୋବସ୍ତ ହୋଇଥିଲା । ଏହି ଅଟ୍ଟହାସ ଶ୍ରବଣ କରି, ପଦ୍ମିନୀର ସାହସ, ରାଜପୁତ୍ରଙ୍କ ଅବିବେକତା, ଓ ରାଜସ୍ଥାନର ଦୁରବସ୍ଥା ବିଷୟରେ ମଦନ ସିଂହ ଓ ଭୀମ ସିଂହ ବିଶେଷ ଆଶ୍ଚର୍ଯ୍ୟ ହେଉଥିଲେ । ମହା ପତିବ୍ରତା ପଦ୍ମିନୀ ମ୍ଲେଚ୍ଛ ରାଜାଙ୍କ ସମ୍ଭୋଗ ଇଚ୍ଛା କରିବା ବଡ଼ ଆଶ୍ଚର୍ଯ୍ୟ ମଣି, ଏଥିରେ କୌଣସି ଗୂଢ଼ କାରଣଥିବ ବୋଲି ଚନ୍ଦ୍ରସେନ,ନାହରଜଙ୍ଗ୍ ପ୍ରଭୃତି ନାନା ତର୍କବିତର୍କ କରୁଥିଲେ ରହିମାନ ଖାଁଙ୍କ କୁପ୍ରବର୍ତ୍ତନା ହେତୁ ନାହରଜଙ୍ଗ୍‌ଙ୍କ ପ୍ରତି ଚକ୍ରବର୍ତ୍ତୀ ଅଧିକ କୁପିତ ହୋଇ ତାହାଙ୍କ ସହିତ କଥୋପକଥନ କରିବାର ସ୍ପୃହା ତ୍ୟାଗ କଲେ । ନାହରଜଙ୍ଗ୍ ଚିନ୍ତାଗ୍ରସ୍ତ ହୋଇ ନିଜ ରାଜଭକ୍ତି ଦର୍ଶାଇବା ନିମନ୍ତେ ସୁସମୟ ଅପେକ୍ଷା କରି କାଳାତିପାତ କରୁଥିଲେ । ସେହି ଦିନ ସୂର୍ଯ୍ୟାସ୍ତ ହେବା ଉତ୍ତାରୁ ଚିତୋର ନଗର ଠାରୁ ଏକ ଶ୍ରେଣୀରେ ତୁରସ୍କ ଶିବିର ପର୍ଯ୍ୟନ୍ତ ସପ୍ତ ଶତ ପାଲିକି ଆସିଲା । ପାଲିକି ଗୋଟିକୁ ଛଅ ଜଣ ଭୋଇ ନିଯୁକ୍ତ ଥିଲେ । ନଗର ଠାରୁ ତୁରସ୍କ ସୈନ୍ୟର ସ୍କନ୍ଧାବାର ପର୍ଯ୍ୟନ୍ତ ବହୁ ଶ୍ରେଣୀରେ ପାଲିକି ପରିପୂର୍ଣ୍ଣ ଥିଲା । ଭୋଇମାନଙ୍କ ହୁଁଙ୍କାର ନାଦରେ ମହମ୍ମଦୀୟମାନଙ୍କ କାନ ଫାଟି ଯାଉଥିଲା । ଚକ୍ରବର୍ତ୍ତୀ ଶିବିରର ଏକପାର୍ଶ୍ୱରେ ଡେରା ବାଡପକାଇ ସେହିଠାକୁ ସ୍ତ୍ରୀ ମାନଙ୍କ ପାଲିକି ନେଇଯିବାକୁ ଆଦେଶ ଦେଲେ । ପାଲିକିରେ ବସିଥିବା ଲୋକେ ତୁରସ୍କ ମାନଙ୍କ ଦୃଷ୍ଟିରେ ନପଡ଼ି ଭିତରେ ପ୍ରବେଶ କଲେ । ତୁରସ୍କ ସୈନ୍ୟ ପାଲିକି ପ୍ରତି ହେଲାରେ ଅନାଇ ନିସ୍ତବ୍ଧ ହୋଇ ରହିଥିଲେ । ସୁବର୍ଣ୍ଣ ମଣ୍ଡିତ ପାଲିକିରେ ପଦ୍ମିନୀ ଅଛନ୍ତି ବୋଲି ଭୋଇମାନେ ଚକ୍ରବର୍ତ୍ତୀଙ୍କୁ ଜଣାଇଲେ ।





## ଅଷ୍ଟାଦଶ ଅଧ୍ୟାୟ ।



ପାଲିଙ୍କି ଗୃହରୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହୁଞ୍ଚନ୍ତେ ଦୁର୍ଗସିଂହ ଚକ୍ରବର୍ତ୍ତୀଙ୍କ ନିକଟକୁ ଯାଇ କହିଲେ "ମହାରାଜ ! ଏବେ ପଦ୍ମିନୀ ଆପଣଙ୍କ ପଟ୍ଟମହିଷୀ ହେବେ । ନିଜ ଭର୍ତ୍ତାଙ୍କଠାରୁ ଚିରବିଚ୍ଛେଦ ଘଟୁଅଛି । ଅତଏବ ସେ ନିଜ ଭର୍ତ୍ତାଙ୍କ ସହିତ ଥରେ କଥା ହେବାକୁ ଇଚ୍ଛା କରୁଅଛନ୍ତି ଏବଂ ସେଥିଲାଗି ଦଣ୍ଡେ ଛୁଟି ଦେବାକୁ ବିଶେଷ ପ୍ରାର୍ଥନା କରୁଅଛନ୍ତି ।" ଏହା ଶୁଣି ଚକ୍ରବର୍ତ୍ତୀ "ଅଚ୍ଛା, ହେଉ" ବୋଲି କହିଲେ । ସେହିକ୍ଷଣି ପଦ୍ମିନୀଙ୍କ ପାଲିଙ୍କି ଭୀମସିଂହଙ୍କ ତମ୍ବୁ-ଠାକୁ ନିଆଗଲା । ତମ୍ବୁ ଭିତରେ ଘଡ଼ିଏ ପର୍ଯ୍ୟନ୍ତ ସେମାନେ କଥାବାର୍ତ୍ତା ହେଲେ । କାମାନ୍ଧ ଅଲ୍ଲାଉଦ୍ଦୀନ କ୍ଷଣେ ସୁଦ୍ଧା ଏହି ଅଳସ୍ୟ ସହ୍ୟ କରିନପାରି ସତ୍ୱର ପଦ୍ମିନୀଙ୍କ ସହିତ ସମ୍ଭାଷଣ କରିବାକୁ ଇଚ୍ଛାକରି, ଭୀମସିଂହଙ୍କୁ ସେହିଠାରେ ନଷ୍ଟକରି ଦିଲ୍ଲୀକୁ ବନ୍ଦୀକରି ନେବାକୁ ମନକରି ରହିମାନ ଖାଁକୁ ଡକାଇ ଉକ୍ତ ପତି ପତ୍ନୀଙ୍କୁ ବନ୍ଦୀକରି ନେବାକୁ ଆଜ୍ଞାଦେଲେ । ରହିମାନ ନିଜ ସୈନ୍ୟସହିତ ଭୀମସିଂହଙ୍କ ତମ୍ବୁଠାକୁ ଗମନକଲେ । ଯିବା ସମୟରେ ରାଜସ୍ତ୍ରୀମାନେ ଥିବା ମହଲରୁ ଗୋଟିଏ ପାଲିଙ୍କି ଆପଣା ଆଡ଼କୁ ଆସିବାର ଦେଖିଲେ । ପାଲିଙ୍କି ଚତୁଃପାର୍ଶ୍ୱରେ ଅନେକ ରାଜପୁତମାନେ ଶସ୍ତ୍ରହସ୍ତହୋଇ ଚାଲିଥିଲେ । ସେମାନଙ୍କ ପ୍ରସ୍ଥାନ ନିବାରଣ କରିବାକୁ ତୁରସ୍କମାନେ ଚେଷ୍ଟା କଲେ, କିନ୍ତୁ ରାଜପୁତମାନେ ସେମାନଙ୍କୁ ଖାତିର ନକରିବାରୁ ଉଭୟଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା । ଏମନ୍ତ ସମୟରେ "ଭୀମସିଂହ ପଳାୟନ କଲେ"—ଏହି ସମ୍ବାଦ ଶିବିର ଯାକ ବ୍ୟାପିଗଲା । ରହିମାନ ଖାଁ ।କ କୃତ୍ରିମ ସମ୍ବାଦ ବୋଲି ବିଶ୍ୱାସ କରି ପ୍ରାଣ ହାନି ଆଶଙ୍କା କରି ଅତି ଶୀଘ୍ର ଚକ୍ରବର୍ତ୍ତୀଙ୍କ ନିକଟକୁ ଦଉଡ଼ି

ଯାଇ ଅତି ସୀନସ୍ୱରରେ "ହେ ସ୍ୱାମି ! ମହା କୃତିମ ଘଟିଲା—ମହା କୃତିମ ଘଟିଲା" ବୋଲି ପ୍ରଳାପ କଲା । ଅଲାଉଦ୍ଦୀନ ଏସ୍ତ୍ରହୋଇ ଉଠି, "କଅଣ ହେଲା, କଅଣ ହେଲା ?" ବୋଲି ପଚାରନ୍ତେ, ଅତି ଚଞ୍ଚଳ ହୋଇ ଇତ୍ରୀମାନ ଜଣାକଲେ "ମହାପ୍ରଭୁ ! ପାଲିଙ୍କିରେ ବସି ଆସିବା ଲୋକେ ସ୍ତ୍ରୀ ନୁହନ୍ତି । ପ୍ରତି ପାଲିଙ୍କିରେ ଜଣେଲେଖାଏ ରାଜପୁତ ଶୂର ବସିଥିଲେ । ପାଲିଙ୍କି ବାହକମାନେ ରାଜପୁତ ସିପାହୀ ଅଟନ୍ତି । ସେଇ ବେଶ ଧାରଣକରି ଅସ୍ତ୍ରଶସ୍ତ୍ର ପାଲିଙ୍କିରେ ଧରି ଆସିଅଛନ୍ତି । ଅମ୍ଭ ସିପାହୀମାନେ କରାୟୁଧ ଥିବାଯୋଗୁଁ ଆଜ ଅମ୍ଭର ନଷ୍ଟପ୍ର ପରାଜୟ ହେବ । ଭୀମସିଂହ ପାଲିଙ୍କିରେ ବସି ନଗରକୁ ପଳାୟନ କରୁଅଛି । ମୁଁ ତାହା ନିବାରଣ କରିପାରିଲି ନାହିଁ ।" ଖାଁ ମୁଖରୁ ଏହି ବାର୍ତ୍ତା ଶ୍ରବଣକରି ଚକ୍ରବର୍ତ୍ତୀ ନିଶ୍ଚେଷ୍ଟ ହୋଇ, କିଛି କ୍ଷଣପରେ ଚୈତନ୍ୟ ପ୍ରାପ୍ତହୋଇ, ରାଜପୁତଙ୍କ କର୍ତ୍ତୃକ ମହା ବିପଦସମୁଦ୍ରରେ ପଡ଼ି ନିଜେ ଓ ସ୍ୱ ସୈନ୍ୟ ମୃତ୍ୟୁମୁଖରେ ପତିତ ହେବାକୁ ହେଲା ବୋଲି ବିଶେଷ ଚିନ୍ତାକଲେ । ମାତ୍ର ଅଳ୍ପକାଳ ମଧ୍ୟରେ ଧୈର୍ଯ୍ୟ ଧାରଣକରି "ହା ମୌଲିଅଲି ! ହା ! ମହମ୍ମଦ ! ହା ! ହସେନ୍, ହୁସେନ ! ଅରେ ନାଜରଜଙ୍ଗ ! ଅରେ ! ଅରେ ! ଆଲ୍ଲା ! ଆଲ୍ଲା ! ଓହୋ ! ଦଉଡ଼ ଯାଅରେ ! ଭୀମସିଂହକୁ ବାନ୍ଧି ଆଣରେ ! ଓହୋ ! ପଦ୍ମିନୀ ? ପଦ୍ମିନୀ ! ଧରରେ ! ଅରେ ସିପାଇମାନେ ଉଠରେ; ଯବନକୁ ସିଦ୍ଧ ହୁଅରେ; ଓହୋ ! ଇବ୍ରାହିମ୍ ! ଜାହାଦର୍ ! ଉଠ; ଉଠ; ଅରେ ! ଜୋଚ୍ଚୁଲ୍ଲା । ଧରୁବ ! ଧରୁବ" ବୋଲି ଚକ୍ରବର୍ତ୍ତୀ ନାନାମତେ ଚିତ୍କାର କରିବାକୁ ଲାଗିଲେ । ଇତିମଧ୍ୟରେ ପୂର୍ବୋକ୍ତ ସ୍ଥଳରେ ଲୁଚି ରହିଥିବା ରାଜପୁତ ଶୂରମାନଙ୍କୁ ସେନାଧିପତିଙ୍କ ସହ ଗୋରସହସ୍ର ନିକଟସ୍ଥ ବ୍ୟକ୍ତି ଏକ ନାଦରେ ହୁଙ୍କାରକରି ଉଠିଆସି ଅସାବଧାନରେ ରହିଥିବା ମ୍ଳେଚ୍ଛ ସେନାଗଣଙ୍କୁ ବିନାଶକଲେ । ମ୍ଳେଚ୍ଛ ସେନା ଅତଶୀଘ୍ର ଉଠି ନିଜ ନିଜର ଅସ୍ତ୍ରଶସ୍ତ୍ର ଧାରଣକରି ରାଜପୁତମାନଙ୍କ ସହିତ ଘୋର ଯୁଦ୍ଧକଲେ । ଏହି ଆକସ୍ମିକ ଯୁଦ୍ଧରେ ମହମ୍ମଦୀୟମାନେ ସ୍ୱସୈନ୍ୟ ଓ ପର ସୈନ୍ୟ ପ୍ରଭେଦ କରିନପାରି ସ୍ୱଜନ ସହିତରେ ପାଖରେ ଯେ ଦେଖିଲା ତାକୁ ବଧ କରିବାକୁ ଲାଗିଲେ । ଇତିମଧ୍ୟରେ ଭୀମ ସିଂହ କୁଶଳରେ ଓ ସୁରକ୍ଷିତ ଭାବେ ସ୍ୱପୁରେ ପ୍ରବେଶ ହୋଇ ଦଳବଳ ସଜ୍ଜିତ କରାଇ ମହମ୍ମଦୀୟମାନଙ୍କୁ

Digitized by srujanika@gmail.com

ଦକ୍ଷିଣ ଦିଗରୁ ଆକ୍ରମଣ କଲେ । ଉଭୟ ସୈନ୍ୟ ମଧ୍ୟରେ ଚଳିବା ମହାଯୁଦ୍ଧ ବର୍ଣ୍ଣନାତୀତ ହୋଇ ଉଠିଲା । ଶିବିରସ୍ଥ ସ୍ତ୍ରୀମାନେ ନିଜ ପ୍ରାଣ ଓ ମାନ ରକ୍ଷା କରିବା ସକାଶେ ବିଳାପ କରନ୍ତେ କେତେକ ସୈନିକମାନେ ଯୁଦ୍ଧ କ୍ଷେତ୍ର ତ୍ୟାଗକରି ଦାରା ପୁତ୍ର ସଂରକ୍ଷଣାର୍ଥେ ପଳାୟନ କଲେ । ସ୍ଥାନେ ସ୍ଥାନେ କଦଳୀ ବୃକ୍ଷ ପରି ଛିଣ୍ଡି ପଡି ଯାଉଥିବା ସିପାଇମାନଙ୍କ ମୁଣ୍ଡ ଓ କବନ୍ଧ; ନଦୀ ସ୍ରୋତବତ୍ ପ୍ରବାହିତ ରକ୍ତ ଓ ଝକ୍ ଝକ୍ ଦୀପ୍ତିମାନ ଅସ୍ତ୍ରପୁଞ୍ଜ ବିନା ସେହି ରଣଭୂମିରେ ଆଉ କିଛି ଦିଶୁ ନଥିଲା । ରାଜପୁତ୍ର ଓ ମହମ୍ମଦୀୟ ସେନା ଭୂଶାୟୀ ଅର୍ଦ୍ଧମୃତଜନଙ୍କ ମାଂସପିଣ୍ଡ ଉପରେ ନିର୍ଦ୍ଦୟଭାବେ ପାଦାଘାତ କରି ପ୍ରାଣପଣେ ସମର କରୁଥିଲେ । ସେହି ବିଷମ ଯୁଦ୍ଧ କ୍ଷେତ୍ର, ମୃତ କଳେବରରେ ମହାଶୋଣିତାକ୍ତ ବ୍ରଣ ପ୍ରପୀଡିତ ଏବଂ ପ୍ରାଣ ପ୍ରୟାଣ ସମୟେ ପରମେଶ୍ୱରଙ୍କୁ ଧ୍ୟାନ କରୁଥିବା ଆଉ ଯୁଦ୍ଧରୁ ଡରି ପଳାୟନ କରୁଥିବା ଲୋକରେ ପରିପୂର୍ଣ୍ଣ ହୋଇଥିଲା । ଇତିମଧ୍ୟରେ ମହାବୀର ପ୍ରତାପ ସିଂହ ଭୀମ ସିଂହଙ୍କୁ ଛାଡି ଯାଇ ମ୍ଲେଚ୍ଛ ଚକ୍ରବର୍ତ୍ତୀଙ୍କୁ କାରାରୁଦ୍ଧ କରିବା ଉଦ୍ଦେଶ୍ୟରେ ଶତଶତ ସୈନିକଙ୍କୁ ସଙ୍ଗେ ଘେନି ଅଲାଉଦ୍ଦୀନଙ୍କ ତମ୍ବୁ ଆକ୍ରମଣ କଲେ । ଚକ୍ରବର୍ତ୍ତୀଙ୍କ ଆଡ଼କୁ ରାଜପୁତମାନେ ଯିବାର ଦେଖି, ସ୍ୱାମୀଙ୍କ ପ୍ରାଣ ରକ୍ଷା କରିବା ଅବଶ୍ୟ କର୍ତ୍ତବ୍ୟ ବୋଲି, ମହମ୍ମଦୀୟମାନେ ଅତି ତ୍ୱରାରେ ପ୍ରତାପ ସିଂହଙ୍କୁ ନିବାରଣ କଲେ ଏବଂ ଆହତ ବ୍ୟାଘ୍ରବତ୍ ରୋଷ ପରବଶ ହୋଇ ପ୍ରତାପ ସିଂହଙ୍କୁ ଆକ୍ରମଣ କଲେ । ପ୍ରତାପ ସିଂହ ମଧ୍ୟାହ୍ନ ସୂର୍ଯ୍ୟ ପରି ନିଜ ପ୍ରତା-ପରେ ମ୍ଲେଚ୍ଛ ସେନାଧିପତିମାନଙ୍କ ଛାତି କମ୍ପାଉ ଥିଲେ । ଉଭୟ ସୈନ୍ୟରୁ ବହୁ ସଂଖ୍ୟକ ବୀରମାନେ ସେହି ତୁମୁଳ ଯୁଦ୍ଧରେ ବିନଷ୍ଟ ହେଲେ । ରାଜପୁତ୍ର-ମାନେ ବହୁ ସଂଖ୍ୟକ ତୁରସ୍କମାନଙ୍କୁ ବିନାଶ କଲେ ସୁଦ୍ଧା ସେମାନଙ୍କ ସଂଖ୍ୟା ଅଧିକ ଥିବା ଯୋଗୁଁ ତୁରସ୍କମାନେ ବେଳକୁ ବେଳ ପ୍ରଚଣ୍ଡ ହୋଇ ସମର କଲେ । ପରିଶେଷରେ ଅସଂଖ୍ୟ ତୁରସ୍କ ସୈନ୍ୟ ରାଜପୁତ୍ର ସେନାକୁ ଚତୁର୍ଦ୍ଦିଗରୁ ବେଷ୍ଟନ କରିବାରୁ ରାଜପୁତ୍ର ସୈନ୍ୟ କ୍ରମଶଃ କ୍ଷୀଣ ହେବାକୁ ଲାଗିଲେ । କିନ୍ତୁ କୌଣସି ଅନିର୍ବଚନୀୟ କାରଣରୁ ରାଜପୁତ୍ର ସେନାରୁ ଜଣେ ସୁଦ୍ଧା ପଳାୟନ କରିବାର ଦେଖାଗଲା ନାହିଁ । ଶରୀରରେ ପ୍ରାଣ ଥିବା ଯାଏ ରାଜପୁତ୍ରମାନେ ଖଡ୍ଗ ନଛାଡି ଯୁଦ୍ଧ କଲେ । ସ୍ୱସୈନ୍ୟ କ୍ଷୀଣ ହେବାର ଦେଖି ପ୍ରତାପ ସିଂହ ଖଡ୍ଗହସ୍ତ ହୋଇ

Digitized by srujanika@gmail.com

ଅକାଳମୃତ୍ୟୁ — ଦେବତାଙ୍କ ପରି ତୁରସ୍କଙ୍କ ଉପରେ ପଡ଼ି ବହୁସଂଖ୍ୟକ ଯୋଦ୍ଧାଙ୍କୁ ଖଣ୍ଡ ଖଣ୍ଡ କରି କର୍ତ୍ତନ କଲେ । ତାହାଙ୍କ ପ୍ରତାପକୁ ଉଗ୍ର ଓ ଭୀଷଣ ଆଘାତ ସହ୍ୟ କରି ନପାରି ମ୍ଳେଚ୍ଛମାନଙ୍କ ଅଗ୍ରଗାମୀ ସୈନ୍ୟ ଛିନ୍ନ ଭିନ୍ନ ହୋଇ ପଳା-ୟନ କଲେ । କିନ୍ତୁ ତକ୍ଷଣେ ଚତୁଷ୍ପାର୍ଶ୍ୱଭାଗରେ ଦଣ୍ଡାୟମାନ ଓ ଦ୍ୱିବିଂଶତ ଯୋଦ୍ଧାଙ୍କ ଦ୍ୱାରା ପରିଚାଳିତ ତୁରସ୍କ ସୈନ୍ୟ ପ୍ରତାପ ସିଂହଙ୍କ ସମ୍ମୁଖବର୍ତ୍ତୀ ହେଲା । ପ୍ରତାପ ସିଂହଙ୍କ ସର୍ବାଙ୍ଗ କ୍ଷତବିକ୍ଷତ ହୋଇ ତନ୍ନିର୍ଗତ ଶୋଣିତରେ ପାର୍ଶ୍ୱବର୍ତ୍ତୀ ଲୋକଙ୍କ ଶରୀର ଆର୍ଦ୍ର ହେଉଥିଲା । ରକ୍ତକ୍ଷୟ ହେତୁ ବଳହୀନ ହୋଇ ସିଂହ ସମୟେ ସମୟେ କିଞ୍ଚିତ୍ ବିଶ୍ରାମ ନେଇ ପୁନର୍ବି ଖଡ୍ଗାଘାତରେ ତୁରସ୍କଙ୍କ ଶିରଚ୍ଛେଦନ କରୁଥିଲେ । ସେଦିବସ ପ୍ରତାପ ସିଂହଙ୍କ ହସ୍ତରେ ପ୍ରାୟ ଏକଶତ ବ୍ୟକ୍ତି ନିହତ ହୋଇଥିବେ । ବଳହୀନ ପ୍ରତାପ ସିଂହଙ୍କ ଉପରକୁ ରହିମାନ ଖାଁ ଅତି ବେଗରେ ଦଉଡ଼ି ଆସନ୍ତେ, ସିଂହ ତାହାକୁ ଘୋଡ଼ା ଉପରୁ ତଳକୁ ଫିଙ୍ଗି ଅଣି ନିଜ ଖଡ୍ଗ ଉଠାଇବା ମାତ୍ରେ ଭୀରୁ ରହିମାନ ପ୍ରତାପ ସିଂହଙ୍କ ପାଦତଳେ ପଡ଼ି ବୀର ପୁରୁଷ ଲକ୍ଷଣ ତ୍ୟାଗ କରି କହିଲା:—"ମୁଁ ଆପଣଙ୍କ ପୁତ୍ର ପରି; ମତେ ମାରିବାଟା ତୁମ୍ଭ ଘର କୁକୁରକୁ ମାରିଲା ପରି; ବାବୁ ! ମତେ ପ୍ରାଣ ଦାନ ଦିଅ; ମୁଁ ମୋହର ପିତାମାତାଙ୍କର ଏକମାତ୍ର ପୁତ୍ର । ମୋହର ପୁତ୍ର ସନ୍ତାନ ହେଲେ ତାହାକୁ ତୁମ୍ଭ ନାମ ଦେବି । ମତେ ଛାଡ଼ି ଦିଅ । ମହାପ୍ରଭୁ ! ମତେ ଛାଡ଼ି-ଦେଲେ ଅମ୍ଭ ଚକ୍ରବର୍ତ୍ତୀ ଯେଉଁ ଗୁପ୍ତ ସ୍ଥାନରେ ଅଛନ୍ତି ତାହା ଆପଣଙ୍କୁ ଦେଖାଇ ଦେବି । ତେବେ ତୁମ୍ଭେ ସୁଲଭରେ ତାହାଙ୍କୁ ବଧ କରି ନିଜ କ୍ରୋଧ ଶାନ୍ତ କରି ପାରିବ । ମୋହପରି ଅକ୍ଷମ ଲୋକକୁ ବଧ କଲେ କି ଫଳ ହେବ ।" ଏପ୍ରକାର ନାନାଭଙ୍ଗିରେ ପ୍ରାର୍ଥନା କରନ୍ତେ ଦୟାଳୁ ପ୍ରତାପସିଂହ ତାହାକୁ ନ ମାରି ଛାଡ଼ିଦେଲେ । ରହିମାନ ମୃତ୍ୟୁ ମୁଖରୁ ପରିତ୍ରାଣପାଇ ଅନ୍ୟ ଯୋଦ୍ଧାଙ୍କ ଦୃଷ୍ଟିରେ ନପଡ଼ିଲାପରି ଗୋଟିଏ ମୃତ ହସ୍ତି ପାର୍ଶ୍ୱରେ ଅଳ୍ପକାଳ ଲୁଚିରହି ପରେ ସେଠାରୁ ଉଠିଯାଇ ରାଜପୁତମାନେ ବସି ଆସିଥିବା ଗୋଟିଏ ପାଲିଙ୍କିରେ ଲୁଚି ବସି ରହିଲା । ଇତଃପୂର୍ବେ କାରାଗୃହ ନିପତିତ ମଦନସିଂହ ମହାନନ୍ଦାଦି-ମାନଙ୍କ କଳବଳ ଦେଖି ଚକ୍ରବର୍ତ୍ତୀ ତାହାଙ୍କୁ କାରାମୁକ୍ତ କରିବେନାହିଁ ବୋଲି

Digitized by srujanika@gmail.com

ଛାଣି, ତଳଙ୍ଗ ହିବ କାରାଗୃହ ତ୍ୟାଗ କରିଯାଇ ରାଜପୁତ୍ର ସୈନ୍ୟରେ ପ୍ରବେଶ କଲେ । ଭୀମସିଂହ ତାଙ୍କୁ ଦେଖି କତିପୟ ସୈନ୍ୟ ସଙ୍ଗେଦେଇ ଶୀଘ୍ର ପ୍ରତାପସିଂହଙ୍କୁ ସାହାଯ୍ୟ କରିବାକୁ ଆଦେଶ ଦିଅନ୍ତେ ଅତି ତ୍ୱରାରେ ଚକ୍ର-ବର୍ତ୍ତୀଙ୍କ ଶିବିରାଭିମୁଖେ ଗମନକରି ସେହିଠାରେ କେବଳ ପ୍ରାଣାବଶିଷ୍ଟ ପ୍ରତାପ ସିଂହଙ୍କୁ ଦର୍ଶନ କଲେ । ଏହି ଶେଷାବସ୍ଥାରେ ସୁଦ୍ଧା ନିଜ ପିତୃବ୍ୟ ପ୍ରତାପସିଂହ ଯୁଦ୍ଧ କରୁଥିବାର ଦେଖି ତାହାଙ୍କ ଶରୀର ପରୀକ୍ଷା କଲନ୍ତେ ତ୍ରିଂଶ ଭୀଷଣ ଆଘାତ ଓ ଅଠଗୋଟି ସାମାନ୍ୟ କ୍ଷତ ହୋଇଥିବାର ଜଣା-ଗଲା । ତେବେ ମଦନସିଂହ କହିଲେ "ବାବୁ ! ଆପଣ ଶିବିରକୁ ପ୍ରତ୍ୟାଗମନ କରନ୍ତୁ; ଯୁଦ୍ଧ କରିପାରିବା ଶକ୍ତି ଆପଣଙ୍କ ଶରୀରରେ ଆଉନାହିଁ । ବ୍ରଣ-ବୈଦ୍ୟଙ୍କ ଦ୍ୱାରା ଚିକିତ୍ସା କରାଅ ।" ଏହି କଥାଶୁଣି ପ୍ରତାପ ଉତ୍ତର ଦେଲେ "ବାବୁ ! ରଣଭୂମିକୁ ମରଣ ଭୟରେ ପଛକୁ ଫେରିଯିବାର ମୁଁ ଇତିପୂର୍ବେ କେବେ ଜାଣିନାହିଁ । ମୁଁ ତଦ୍ରୂପ କରିନପାରେ । ରକ୍ତ ବର୍ଷଣ ଦ୍ୱାରା ଆର୍ଦ୍ର-ହୋଇଅଛି ଯେ ଏହି ଭୂଶଯ୍ୟା, ଏଥିରେ ମୁଁ ସୁଖରେ ଶୟନ କରିପାରିବି । ତୁ ଚକ୍ରବର୍ତ୍ତୀ ସହିତ ଯୁଦ୍ଧକରି ତାହାଙ୍କୁ ଧରିଆଣ, ନଚେତ୍ ବଧକର । ମୋହ-ପାଇଁ ତୁ ଚିନ୍ତା କରନାହିଁ ।" ମଦନସିଂହ ଦୁଃଖିତହୋଇ, ପିତୃବ୍ୟଙ୍କ ପ୍ରାଣ-ରକ୍ଷା ବିଷୟରେ ନିରାଶ ହୋଇ ଚକ୍ରବର୍ତ୍ତୀଙ୍କ ଶିବିରାଭିମୁଖେ ପ୍ରସ୍ଥାନ କଲେ । ଚକ୍ରବର୍ତ୍ତୀ ରାଜପୁତଙ୍କ କ୍ରୋଧ କୌଶଳୋପାୟ ବିଷୟରେ ବିଶେଷ ଚିନ୍ତାକରି, ଶରୀର ରକ୍ଷକ ସୈନ୍ୟ ସହିତ ଗୋଟିଏ କ୍ଷୁଦ୍ର ତମ୍ବୁ ମଧ୍ୟରୁ ପଳାୟନକରି ନିଜ ପ୍ରାଣ ରକ୍ଷାର ଉପାୟ କରୁଥିଲେ । ଶରୀର ରକ୍ଷକ ସୈନ୍ୟ ମଦନସିଂହଙ୍କୁ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଅଛନ୍ତି, ଏମନ୍ତ ସମୟରେ ମଦନସିଂହ ଶତ୍ରୁସୈନ୍ୟ ଭେଦକରି ହଠାତ୍ ଉତ୍ତେଜିତ ସିଂହବତ୍ ଚକ୍ରବର୍ତ୍ତୀଙ୍କ ସମ୍ମୁଖରେ ଅତି ନିକଟରେ ପାର୍ଶ୍ୱବର୍ତ୍ତୀ ନାଜରଜଙ୍ଗ ଓ ଚକ୍ରବର୍ତ୍ତୀଙ୍କ ମଧ୍ୟରେ ଦଣ୍ଡାୟମାନ ହୋଇ ନିଜ ଖଡ୍ଗକୁ ଉନ୍ମୁକ୍ତକରି ପର ତୁଲାଇ ଚକ୍ରବର୍ତ୍ତୀଙ୍କୁ ଆକ୍ରମଣ କଲେ । ଯଥାସମୟରେ ନାଜରଜଙ୍ଗ ସାହାଯ୍ୟ କରିନଥିଲେ ସେହିଦିନ ଚକ୍ରବର୍ତ୍ତୀଙ୍କ ପର-ଲୋକ ଗମନ ଅନିବାର୍ଯ୍ୟ ହୋଇଥାନ୍ତା । ଚକ୍ରବର୍ତ୍ତୀ ମଦନ ସିଂହଙ୍କୁ ଦେଖି ନିର୍ବେଦ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ଥାନ ତ୍ୟାଗକରି ପଳାୟନ କରିବାକୁ ସୁଦ୍ଧା

Digitized by srujanika@gmail.com

ଅକ୍ଷମ ହେଲେ । ଏମନ୍ତ ସମୟରେ ନାଜରଜଙ୍ଗ ମଦନ ସିଂହଙ୍କୁ ଅନାଇ କହିଲେ, "ମିତ୍ର ! ଏତେଦିନରେ ପୁନର୍ବାର ଆମ୍ଭର ମିଳନ ହେଲେସୁଦ୍ଧା ମୁଁ ବର୍ତ୍ତମାନ ଭୂମିହୋଇ ରହିନପାରେ । ମୋହର ଜୀବନ ଥିବାଯାଏଁ ତୁମ୍ଭେ ଚକ୍ରବର୍ତ୍ତୀଙ୍କ ଅଙ୍ଗକୁ ଯାଇନପାର । ସେହିଠାରେ ରହ । ଏକପାଦ ଅଗ୍ରସର ହେଲେ ତୁମ୍ଭ ପ୍ରାଣ ରକ୍ଷାହେବା କଷ୍ଟସାଧ୍ୟ । ପ୍ରଭୁଙ୍କ ପ୍ରାଣରକ୍ଷା ଅପେକ୍ଷା ମୋହର ଜୀବନ ରକ୍ଷା ଅଧିକ ନୁହେ ।" ନାଜରଜଙ୍ଗଙ୍କ ଈଦୃଶ ରାଜଭକ୍ତି ପରି-ପୂର୍ଣ୍ଣ ଓ ଶୌର୍ଯ୍ୟ ସୂଚକ ବଚନଦ୍ୱାରା ମଦନ ସିଂହଙ୍କୁ ସ୍ଫୁରିତ କରନ୍ତେ ସେ କଷ୍ଟରୁ ବଞ୍ଚିତ ହୋଇ "ଚକ୍ରବର୍ତ୍ତୀ ଅଦୃଷ୍ଟବନ୍ତ ହେବାଯୋଗୁଁ ଆଜଦିନ ତୁମ୍ଭେ ମୋହର ପ୍ରତି-ବନ୍ଧକ ହେଲ । ପ୍ରଥମେ ତୁମ୍ଭ ସହିତ ଯୁଦ୍ଧକରି, ଜୟ ଲାଭ କରି ପରେ ଚକ୍ରବର୍ତ୍ତୀଙ୍କୁ ଆକ୍ରମଣ କରିବି" ବୋଲି କହି ନାଜର-ଜଙ୍ଗଙ୍କ ସହିତ ଯୁଦ୍ଧ କରିବାକୁ ଆରମ୍ଭ କଲେ । ଯୋଦ୍ଧା ଦ୍ୱୟ ବହୁ ସମୟ ସମର କରି କେହି ଜଣେ ଜୟଲାଭ କରିନପାରି ଶ୍ରାନ୍ତ ହେଲେ । ଏମନ୍ତ ସମୟରେ ସେହିଦିନ ପାଇଁ ଯୁଦ୍ଧ ଶେଷ କରିବାକୁ ଭୀମସିଂହ ଆଦେଶ ପ୍ରଦାନ କରନ୍ତେ ମଦନ ସିଂହ ଯୁଦ୍ଧରୁ ପୁନରାବୃତ୍ତ ହେଲେ । ସେହିଦିନ ରାଜପୁତ ବୀର-ମାନେ ଅନେକ ମୃତ୍ୟୁ ଲଭିଥିଲେହେଁ ମହମ୍ମଦୀୟମାନେ ଛିନ୍ନ ଭିନ୍ନ ହୋଇ ନାନାଦିଗକୁ ପଳାୟନ କଲେ । ଇତିମଧ୍ୟରେ ଅମ୍ଭମାନଙ୍କ ଚିଦାନନ୍ଦ ଯୋଗୀ ଦନ୍ତୁଡ଼ ଲଗାଇ ଶଏ ଜଣ ଯୋଦ୍ଧାଙ୍କୁ ସଙ୍ଗେ ଘେନି ରଙ୍ଗଭୂମିରେ ପ୍ରବେଶକରି ନିଆଁ ଲଗାଇ ତୁରସ୍କମାନଙ୍କ ଦଶଦାଢ଼ି ଦଗ୍ଧକରି, ସେମାନଙ୍କ ଆଭରଣ ବସ୍ତ୍ରା-ଦିରେ ସେମାନଙ୍କୁ ବନ୍ଧନକରି ନାନାପ୍ରକାର ପୀଡ଼ନେ ତୁରସ୍କଙ୍କ ପ୍ରାଣ ନେବାକୁ ଆରମ୍ଭ କଲେ । ମହମ୍ମଦୀୟମାନେ ସମ୍ପୂର୍ଣ୍ଣ ପରାଜୟ ପାଇଲେ । ସର୍ଦ୍ଦାରମାନେ ଏକଦିଗେ, ସେମାନଙ୍କ ବାହନ ହସ୍ତୀ ଘୋଡ଼ାଦି ଅନ୍ୟଦିଗେ ପଳାୟନ କଲେ । ଇତଃସ୍ତତ ପଳାୟନ କରିବା ମହମ୍ମଦୀୟମାନଙ୍କ ଦୁଃଖ ନିଜ ସ୍ତ୍ରୀ କୁଟୁମ୍ବାଦିଙ୍କ ଆର୍ତ୍ତନାଦରେ ଦ୍ୱିଗୁଣିତ ହେଲା । ଯେଣେ ଦେଖିଲେ ମୃତ ଶରୀର, ଓ ରକ୍ତ ପ୍ରବାହ; ଯେଉଁ ଦିଗରେ ଯାଅ ପୃଥିବୀ ଅସ୍ତ୍ର ପୂର୍ଣ୍ଣ; ଓ ସର୍ବଦିଗରୁ ଆର୍ତ୍ତଧ୍ୱନି ନିଃସୃତ ।

ନିଃଶଙ୍କରେ ସଞ୍ଚାର କରୁଥିବାରୁ ସେହି ରଙ୍ଗଭୂମି ମହାଭୟଙ୍କର

Digitized by srujanika@gmail.com

ହୋଇ ଉଠିଲା । ସ୍ୱଳ୍ପ ଦୂର ପ୍ରାନ୍ତର ସମସ୍ତେ ମହାପ୍ରତାପ ସୈନ୍ୟ ଶିବିର ତ୍ୟାଗକରି ପଳାୟନ କଲେ । ରାଜପୁତମାନେ ମାସ ଘଣ ଶେଷହେବାଯାଏଁ ସେହିଠାରେ ଥିଲେ ।



## ଊନବିଂଶ ଅଧ୍ୟାୟ ।

—◯ ❖ ◯—

ନିଜ ସୈନ୍ୟ ସମୂହ ଶତ୍ରୁ ହସ୍ତରେ ନିହତହୋଇ ବିଶେଷ କ୍ଷତି ସମ୍ଭବିବା ଏବଂ ପଦ୍ମାଦେବୀ କରଗତ ନହେବା ଦେଖି ଚକ୍ରବର୍ତ୍ତୀ ରଣରଙ୍ଗ ତ୍ୟାଗପୂର୍ବକ ସ୍ୱଳ୍ପରେ ବୃହତ୍ ଗଜୋପରି ଆରୋହଣ କରି, ଆପତ୍କାଳରେ ସାହାଯ୍ୟ ଦାନକରିବା ନାଗରଜଙ୍କୁ ବହୁ ପ୍ରଶଂସାକରି, ତାହାଙ୍କୁ ପାଖରେ ବସାଇ, ଅତି ଶୀଘ୍ର ଭାବରେ ଦିଲ୍ଲୀନଗରକୁ ପ୍ରତ୍ୟାଗମନ କଲେ । ସୈନ୍ୟ ସଙ୍ଗେ ଆସିଥିବା ସ୍ତ୍ରୀମାନେ ମହା ଆର୍ତ୍ତଧ୍ୱନି କରି ପଳାୟନ କରିବାକୁ ଲାଗିଲେ ଏବଂ ପଳାୟନକାଳେ ସେମାନଙ୍କ ପତିମାନେ ଯଥାମତେ ସେମାନଙ୍କୁ ସାନ୍ତ୍ୱନା କରୁଥିଲେ । ଯୁଦ୍ଧ ଲାଗିଥିବା ପର୍ଯ୍ୟନ୍ତ ଚନ୍ଦ୍ରସେନ ରଣଭୂମିରେ ରହି ଶତ୍ରୁ ସୈନ୍ୟ ଇତଃସ୍ତତ ପଳାୟନ କରିବାର ଦେଖି ଜୟ ଆଶା ତ୍ୟାଗକରି ନିଜ ବାସସ୍ଥାନକୁ ଫେରିଯାଇ, ଭାର୍ଯ୍ୟା ଓ ହେମଲତାକୁ ପ୍ରସ୍ଥାନାରମ୍ଭ କରିବାକୁ କହିଲେ । ହେମଲତା ଶିବିରରେ ନଥିବା କଥା ଯହିଁ ଜଣାଗଲା, ସେତେକ୍ଷଣ ହେମଲତାକୁ ଖୋଜି ପରିଶେଷରେ କୌଣସି ମହାପ୍ରଭାବ ତାହାଙ୍କୁ ନେଇଯାଇଥିବାର ବିଶ୍ୱାସକରି, ଅତ୍ୟନ୍ତ ଦୁଃଖିତ ହୋଇ, ସକୁଟୁମ୍ବେ ଚକ୍ରବର୍ତ୍ତୀଙ୍କ ପଛେ ପଛେ ଦିଲ୍ଲୀକୁ ପ୍ରତ୍ୟାଗମନ କଲେ । ମଦନସିଂହ ନିଜ ପିତୃବ୍ୟଙ୍କ ଅବସ୍ଥା ସ୍ମରଣକରି ତାହାଙ୍କୁ ଦେଖିବାନିମିତ୍ତେ ଶୀଘ୍ର ସେ ପଡ଼ିଥିବା ସ୍ଥାନାଭିମୁଖେ ପ୍ରସ୍ଥାନ କଲେ । କିନ୍ତୁ ସେ ଯିବା ପୂର୍ବେ ଶ୍ରୀମନ୍ତ ମହାରାଜା ମନୁଷ୍ୟ ପଠାଇ ତାହାଙ୍କୁ ଖୋଜି ଆଣିବାକୁ ଆଦେଶ ଦେଇଥିବାରୁ; ରାଜଭୃତ୍ୟମାନେ ସର୍ବାଙ୍ଗ କ୍ଷତପୂର୍ଣ୍ଣ ସେହି ବୀରଚୂଡ଼ାମଣିଙ୍କୁ

Digitized by srujanika@gmail.com

ସେନାପତି ଭୀମସିଂହଙ୍କୁ ସମର୍ପଣ କଲେ । ଭୀମସିଂହ ତାହାଙ୍କ ଅବସ୍ଥା ଦେଖି ଜୀବନ ଆଶା ପରିତ୍ୟାଗ କଲେ କିନ୍ତୁ ଜୀବନ ବାୟୁ ପ୍ରବାହିତ ହେବାଯାଏଁ ଏ ଚିକିତ୍ସା ନକରାଇବା ଅନୁଚିତ ବୋଲି ଜାଣି ବୀର ଚନ୍ଦ୍ରଙ୍କୁ ତାହାଙ୍କୁ ସମର୍ପଣ କରାଇ, ଶୀଘ୍ର ପ୍ରତାପ ସିଂହଙ୍କୁ ନିଜ ମନ୍ଦିରକୁ ଘେନିଆସିବାକୁ ଆଦେଶ ପ୍ରଦାନ କଲେ । ପିତୃବ୍ୟ ସୁରକ୍ଷିତ ଭାବେ ଭୀମସିଂହଙ୍କ ମନ୍ଦିରରେ ଥିବା ସମ୍ବାଦ ମଦନସିଂହ ଶ୍ରବଣ କରି, ଶତ୍ରୁବଳ ଓ କ୍ଷତବିକ୍ଷତ ଭୂଶାୟୀ ଜୀବିତ ଆତ୍ମୀୟ ରାଜପୁତ ଶୂରମାନଙ୍କୁ ଚିକିତ୍ସା କରାଇ ଜୀବଦାନ ଦେବା ସକାଶେ ରଣଭୂମିରେ କତିପୟ କାଳ ସଞ୍ଚାର କରିବାକୁ ଲାଗିଲେ । ରହମାନ ଖାଁ ପ୍ରାଣ ଭୟରେ ନିଜ ଖଡ୍ଗ ଲୁଚାଇ, ଅନ୍ତଃପୁରବାସିନୀ ସ୍ତ୍ରୀଙ୍କପରି ଗୋଟିଏ ପାଲିଙ୍କିରେ ଯୁଦ୍ଧ ଶେଷ-ହେବା ପର୍ଯ୍ୟନ୍ତ ଲୁଚିଥିଲା, ନିଜ ଓ ପର ସୈନ୍ୟ ସମୂହ ଯୁଦ୍ଧ ଭୂମି ପରିତ୍ୟାଗ-କରି ଗଲା ଉତ୍ତାରୁ ପାଲିଙ୍କି କପାଟ ଖୋଲି, କାହାରିକୁ ଅପେକ୍ଷା ନ କରି ଧୀରେ ଧୀରେ ପଳାୟନ କରିବାକୁ ଲାଗିଲା । ଯାଉଁ ଯାଉଁ ଦୁର୍ଦ୍ଦୈବ କ୍ରମେ ମାର୍ଗ ମଧ୍ୟରେ ମଦନସିଂହଙ୍କ ଦୃଷ୍ଟିରେ ପଡ଼ିଲା । ତାହାକୁ ଦେଖି ମଦନସିଂହ "କହେ ଖାଁ ସାହେବ କି, ପ୍ରାଣଧରି ପଳାଉ ଅଛକି ?" ବୋଲି ପ୍ରଶ୍ନ କରନ୍ତେ, ଜୀବନ୍ମୃତ ମନୁଷ୍ୟଙ୍କପରି ଦଣ୍ଡାୟମାନ ହୋଇ, ସିଂହଙ୍କ ହସ୍ତରେ ନିଜ ମରଣ ନିଶ୍ଚୟ ଘଟିବ ବୋଲି ବିଶ୍ୱାସ କରି, ଯଶସ୍ୱୀମରଣ ଲଭିବାକୁ ଇଚ୍ଛୁକ ହୋଇ ନିଜ ଖଡ୍ଗ ଉତ୍ତୋଳନ କରି ମଦନସିଂହଙ୍କ ଉପରକୁ ଲମ୍ଫ ଦେଲା । ମଦନସିଂହ ସେହି ଆଘାତ ନିବାରଣ କରି, ମ୍ଲେଚ୍ଛ ସେନା ନାୟକକୁ ଏକବାର ଭୂଶାୟୀ କରିବା ଉଦ୍ଦେଶ୍ୟରେ ଅତି ଜୋରରେ ପ୍ରହାର କଲେ । ପଥିକଙ୍କ ଧନ ଲୁଣ୍ଠନ କରିବା ଏବଂ ସ୍ତ୍ରୀମାନଙ୍କୁ କାରାରୁଦ୍ଧ କରିବା ପାତକ ଓ ନିରପରାଧୀଙ୍କ ବିରୁଦ୍ଧରେ ଚନ୍ଦ୍ରବଂଶୀଙ୍କଠାରେ ମିଥ୍ୟା ଉଠାଇବାର ତାହାଙ୍କ ଈର୍ଷା ଜନ୍ମାଇବା କ୍ରୂରତା, ସେହି ସମୟରେ ଖାଁ ସାହେବଙ୍କ ସ୍ମରଣ ହୋଇ, ବିଶେଷ ମନସ୍ତାପ ଜନ୍ମାଇଲା । ପରଲୋକରେ ସେ ଅଲ୍ଲାଙ୍କୁ ସ୍ମରଣ କରି, ମହାକ୍ଲେଶ "ମନ୍ନା" ଅଙ୍ଗକୁ ଅନାଇ ପ୍ରାଣ ତ୍ୟାଗ କଲା । ମଦନସିଂହ ବନ୍ଧୁଗଣଙ୍କୁ ଔଷଧ ଦେଇ ସେମାନଙ୍କ ଚିକିତ୍ସା ସକାଶେ ଉପଯୁକ୍ତ ଲୋକଙ୍କୁ ନିଯୁକ୍ତ କରାଇ, ରାତ୍ରି ଦୁଇପ୍ରହର ହେବାର ଜାଣି ଗୃହକୁ ପ୍ରତ୍ୟାଗମନ କଲେ । ଯିବା ସମୟରେ ଜଣେ ପୁରୁଷ

Digitized by srujanika@gmail.com

ପଛକୁ ଅଶ୍ୱ ପିଠିରେ ହାତପକାଇ ତହିଁରୁ ତାହାଙ୍କ ଗମନ ନିରୋଧ କଲେ । ମଦନସିଂହ ଚମକିପଡି ପଛକୁ ଅନାଇ, ଜଣେ ଷୋଡଶବର୍ଷୀୟ ଯୁବକଙ୍କୁ ଦେଖି ବିସ୍ମିତଚିତ୍ତରେ "ତୁମ୍ଭେ କିଏ ?" ବୋଲି ପ୍ରଶ୍ନ କଲେ । ସେହି ଯୁବକ ଉତ୍ତର କଲେ "ମୋହର ନାମ କୁମାରସିଂହ, ମୁଁ ଜଣେ ରାଜପୁତ୍ର ଅଟେ ।" ପରେ ଉଭୟଙ୍କ ମଧ୍ୟରେ ଏମନ୍ତ ସମ୍ଭାଷଣ ଚଳିଲା;—

ମଦନ ସିଂହ—ତୁମ୍ଭେ କେଉଁଠାରୁ ଏହି ରାତିରେ ଆସିଲ ? ତୁମ୍ଭର ପରିଚୟ ମତେ ଜଣାଅ ।

କୁମାର—ମହାପ୍ରଭୁ ! ଇତିପୂର୍ବେ ମୁଁ ମେଘ ଚକ୍ରବର୍ତ୍ତୀଙ୍କ ଅଧୀନରେ ଥିଲି । ଶାଳଗ୍ରାମ ନିବାସୀ ନାରାୟଣସିଂହ ମୋହର ପ୍ରପିତାମହ ଅଟନ୍ତି, ହେମଲତା ମୋହର ଭଗିନୀ; ବହୁଦିନ ହେଲେ ଆମ୍ଭର ବିଚ୍ଛେଦ ଘଟିଅଛି । ଆମ୍ଭ ବାଲ୍ୟକାଳରେ ଆମ୍ଭ ପିତାମହଙ୍କ କାଳ ହୋଇଅଛି ।

ମଦନ—ଅହୋ ! ତୁମ୍ଭର କଥାଶୁଣି ବିସ୍ମୟ ଜନ୍ମୁଅଛି । ହେମଲତାର ଜଣେ ଅଗ୍ରଜ ଅଛନ୍ତି ବୋଲି ମୁଁ ଏବେ ଶୁଣିଲି । ଓହୋ ! ତୁମ୍ଭର ମୁଖାରବିନ୍ଦେ ହେମର ମୁଖାରବିନ୍ଦପରି ଦିଶୁଅଛି । ହେମଲତା ବର୍ତ୍ତମାନ କେଉଁଠାରେ ଅଛି ? ତାହାକୁ ଦେଖି ବିଶେଷ ଦିନ ହେଲାଣି, ତୁମ୍ଭ ପ୍ରପିତାମହ କେଉଁଠାରେ ?

କୁମାର—ଆମ୍ଭ ହେମଲତା ? ସେମାନେ ଏହି ମହାମ୍ଲେଚ୍ଛ ଶିବିରରେ ଥିଲେ, କିନ୍ତୁ ଏହି ଅପୂର୍ବ ଗଣ୍ଡଗୋଳରେ କେଉଁଆଡେ ପଳାଇଥିବେ । ସେ ମିଳିବାର ଦୁର୍ଲଭ ବୋଲି ମୁଁ ବିଚାର କରେ ।

ମଦନ—ଅହୋ ! ଏହି କଥା ମତେ ଜଣାଗଲାନାହିଁ । ଓହୋ ! ମୁଁ କଣ କରିବି ? ମତେ ସେ କିପରି ପ୍ରାପ୍ତହେବ ? ଦୈବ ମୋହଠାରେ କେଡ଼େ ନିର୍ଦ୍ଦୟ ହୋଇଅଛି ।

କୁମାର—ଆପଣଙ୍କର ତାହାଠାରେ ଏଡ଼େ ପ୍ରେମ କାହିଁକି ? ଆପଣ ତାହାକୁ ବିବାହ କରିବେକି ? ଆପଣଙ୍କର ତାହାଠାରେ ଯେଉଁରୂପ ଅନୁରାଗ ଅଛି ତାହାର ମଧ୍ୟ ଆପଣଙ୍କଠାରେ ସେହିରୂପ ଅନୁରାଗ ଅଛିତ ?

ମଦନ—ତୁମ୍ଭେ ସେପରି ବିଚାର କର ନାହିଁ । ହେମଲତାର ମୋହଠାରେ ପୂର୍ଣ୍ଣ-

Digitized by srujanika@gmail.com

ନ ସ୍ୱର୍ଗ ଅଛନ୍ତି । ସେ କେଉଁଠାରେ ଅଛନ୍ତି ତାହା ମୁଁ ଜାଣିବାକୁ ଇଚ୍ଛା କରେ । ଦୟା କରି ମତେ ସେହି କଥା କହ । ସେ ଯଥାର୍ଥରେ ଏହି ଶିବିରକୁ ଆସିଥିଲେ କି ? ସେପରି ହେଲେ, ଆସ ତାଙ୍କୁ ଥରେ ଖୋଜିବା ।

ମଦନ ସିଂହ ଏହିରୂପ ଅନୁରୋଧ କରନ୍ତେ କୁମାର ସିଂହ ମନ୍ଦହାସ ପ୍ରକାଶ କରି କହିଲେ, "ତୁମ୍ଭେ ଏତେ ବ୍ୟସ୍ତ ହୁଅ ନାହିଁ । କାଲି ପ୍ରଭାତ ହେବା ଯାଏଁ ଅପେକ୍ଷା କର" । ପରେ ପାଲି ଗ୍ରାମରେ ବର୍ଦ୍ଧମାନଙ୍କ ହେମଲତା ପ୍ରତି ଦୌରାତ୍ମ୍ୟ ଚଳାଇବା, ନାରାୟଣ ସିଂହଙ୍କୁ କାଶୀକୁ ପ୍ରେରଣ କରିବା, ଯୋଗୀଙ୍କ କୃପାବଳରୁ ହେମ କୁଞ୍ଜ ନଗରକୁ ଯାଇ ଶିବ ପ୍ରସାଦଙ୍କ ଗୃହରେ ରହିବା, ସେଠାରୁ ମାୟୋପାୟରେ ବର୍ଦ୍ଧମାନ ତାହାଙ୍କୁ ଦଣ୍ଡିକୁ ନେଇ ମାନ-ଭଙ୍ଗ କରିବାକୁ ବଳାତ୍କାର କରିବା ଏବଂ ଚନ୍ଦ୍ରସେନଙ୍କ କୃପାରେ ସେହି ଆପଦରୁ ମୁକ୍ତ ହୋଇ ଚକ୍ରବର୍ତ୍ତୀଙ୍କ ଶିବିରସହ ଏହି ଦେଶକୁ ଆସିବା ଇତ୍ୟାଦି ପୂର୍ବ ବୃତ୍ତାନ୍ତ ଆମୂଳରେ ବର୍ଣ୍ଣନା କଲେ । ବର୍ଦ୍ଧମାନ ଚଳାଇବା ଦୌରାତ୍ମ୍ୟ ଶ୍ରବଣ କରି ମଦନ ସିଂହ ଅତ୍ୟନ୍ତ ଦୁଃଖିତ ହୋଇ ହେମଲତା ପ୍ରତି ଅଧିକତର କୃପା ଓ ଅନୁରାଗ ପ୍ରଦର୍ଶନ କରି ଶୀଘ୍ର ହେମଲତାକୁ ଦେଖାଇବା ପାଇଁ କୁମାର ସିଂହଙ୍କୁ ଅନୁରୋଧ କଲେ । କିନ୍ତୁ ସେ କେବଳ କହନ୍ତି, "ମତେ ଅଧିକ ପ୍ରଶ୍ନ କରି ଦୁଃଖ ବଢ଼ାଅ ନାହିଁ; କାଲି ମୋହର ବିଷୟ ଓ ମୋହର ଭଗିନୀର ବିଷୟ ସ୍ପଷ୍ଟ ଜଣାଇବି" ବୋଲି କହନ୍ତେ ମଦନ ସିଂହ ତୁନି ହୋଇଲେ । କିନ୍ତୁ ମନରେ ନାନାମତେ ସେହି ବିଷୟରେ ଆଲୋଚନ କରି ବସିଲେ । ଉଭୟେ ନାନାମତେ ସମ୍ଭାଷଣ କରୁଁ କରୁଁ ନଗର ସମୀପବର୍ତ୍ତୀ ହେଲେ ଓ ସେହିଠାରେ ଚିଦାନନ୍ଦ ଯୋଗୀଙ୍କୁ ଭେଟିଲେ । ଯୋଗୀଙ୍କୁ ଦେଖି କୁମାର ସିଂହ ନମସ୍କାର କରି ଅତି ବିନୟରେ ଯୋଡ଼ ହସ୍ତ ହୋଇ ଦଣ୍ଡାୟମାନ ହୁଅନ୍ତେ ଯୋଗୀ ତାହାଙ୍କୁ ଆଶୀର୍ବାଦ କରି ସଙ୍କେତ ଦ୍ୱାରା ତାହାଙ୍କୁ ଚିହ୍ନି ଯାଇ ନିଜ ମଠକୁ ଯିବା ପାଇଁ ତାହାଙ୍କୁ ବିଶେଷ ଅନୁରୋଧ କଲେ । କୁମାର ସିଂହ ମଦନ ସିଂହଙ୍କଠାରୁ ବିଦାୟ ନେଇ ଯୋଗୀଙ୍କ ସହିତ ଗମନ କଲେ । ମଦନ ସିଂହ କୁମାର ସିଂହଙ୍କ ସମ୍ଭାଷଣ ବିଷୟରେ ନାନା-ବିଧ ତର୍କ କରି ତାହାଙ୍କ ମୁଖ ଲାବଣ୍ୟରେ ଆକର୍ଷିତ ହୋଇ, ସଚଳ ମନ

Digitized by srujanika@gmail.com

ପ୍ରାଣ ତାହାଙ୍କଠାରେ ରଖି ଗୁରୁଙ୍କୁ ପ୍ରସ୍ଥାନ କଲେ । କୁମାର ସିଂହ ସେହି ରାତ୍ରି ଯୋଗୀଙ୍କ ମଠରେ ଭୋଜନ କରି ସୁଖରେ ନିଦ୍ରା ଗଲେ । ମଦନ ସିଂହ ଗୃହରେ ପ୍ରବେଶ କରିବା ମାତ୍ରେ କୃଷ୍ଣ ସିଂହ ବିଳାପ କରି କହିଲେ, "ବାବୁ ! ପ୍ରତାପ ସିଂହ ଭୀଷଣ ବ୍ରଣ ପୀଡ଼ା ଯୋଗୁଁ ଚରମାବସ୍ଥାରେ ରାଜ ଭବନରେ ପଡ଼ିଅଛନ୍ତି । ସୁବର୍ଣ୍ଣ ବାଈ ସେହିଠାରେ ଅଛନ୍ତି । ତୁମ୍ଭେ ଶୀଘ୍ର ସେଠାକୁ ଗମନ କର ।" ଏହି ଦୁଃସମ୍ବାଦ ଶ୍ରବଣ କରି ମଦନ ସିଂହ ଦୁଃଖ ଭର ହେତୁ ଚାଲି ନପାରି ଅନବାର ଅଶ୍ରୁପାତ କରି ଧୀରେ ଧୀରେ ରାଜଭବନରେ ପ୍ରବେଶ ହେଲେ । ଭୀମ ସିଂହ, ମହାରାଣା ଲକ୍ଷ୍ମଣ ସିଂହ ଓ ଗୋଲାପ ସିଂହ ମଦନ ସିଂହଙ୍କୁ ପାଛୋଟି ନେଇ ଶତ୍ରୁ ଜୟ କରିଥିବାରୁ ତାହାଙ୍କୁ ବିଶେଷ ଗୌରବ କରି, ପ୍ରତାପ ସିଂହଙ୍କ ନିକଟକୁ ନେଇ ଗଲେ । ଜୟଲାଭର ସନ୍ତୋଷ ଓ ପିତୃ ବିୟୋଗର ଦୁଃଖ ମଦନ ସିଂହଙ୍କ ହୃଦୟ ଅଧିକାର କଲା । ସେ ଉତ୍ତରକୁ ଯାଇ ବ୍ରଣ ହେତୁ ବିଶେଷ କଷ୍ଟଭୋଗ କରୁଥିଲେ ସୁଦ୍ଧା ଧୈର୍ଯ୍ୟହୀନ ହୋଇ ନଥିବା ପିତୃବ୍ୟ ପ୍ରତାପ ସିଂହଙ୍କୁ ଦେଖି, ଦୁଃଖ ସମ୍ଭାଳି ନପାରି ତାହାଙ୍କ ଉପରେ ପଡ଼ି ବିଳାପ କରିବାକୁ ଲାଗିଲେ । ସୁବର୍ଣ୍ଣ ବାଈ ପୁତ୍ରଙ୍କୁ ଆଲିଙ୍ଗନ କରି, "ପିତୃଦେବ ପଳାଉ ଅଛନ୍ତି ରେ ବାବୁ !" ବୋଲି ଉଚ୍ଚୈଃସ୍ୱରରେ ରୋଦନ କଲେ । ମଦନ ସିଂହ ଦାଦାଙ୍କ ମୁଖରେ ନିଜ ମୁଖ ଲଗାଇ, "ଦାଦା ! ମୁଁ ମାତୃ ଓ ପିତୃ ହୀନ ହୋଇଥିଲି; ତୁମ୍ଭେ ମତେ ଅତ୍ୟନ୍ତ ଆଦରରେ ପୋଷଣ କରି ସେହି ଅଭାବ ବିସ୍ମରଣ କରାଇ ଥିଲ । ଦାଦା ! ମତେ ଛାଡ଼ି ପଳାଇବ କି ? ମୁଁ ଅନାଶ୍ରୟ ହେଲି ? ମୁଁ କେଉଁପରି ଜୀଇଁବି ?" ଏହାପରି କହି ଭୂମିରେ ଗଡ଼ି ଗଲେ । ଶୌର୍ଯ୍ୟ ସିନ୍ଧୁ ସମ ପ୍ରତାପ ସିଂହ ତାହାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ବାବୁ ! ତୁ ରାଜପୁତ୍ର ନୋହୁ କି ? ମରଣ ସମସ୍ତଙ୍କ ଅନିବାର୍ଯ୍ୟ; ମୁଁ ବୀର ପୁରୁଷୋଚିତ ମରଣ ପ୍ରାପ୍ତ ହେଉଅଛି । ସ୍ୱଦେଶର ସ୍ୱାତନ୍ତ୍ର୍ୟ ସଂରକ୍ଷଣେ ଯୁଦ୍ଧ କରି ମୁଁ ମରଣ ଲଭୁଥିବାଠାରେ ତୁ ସନ୍ତୁଷ୍ଟ ନହୋଇ ଦୁଃଖ କରୁଅଛୁ କାହିଁକି ? ତୁ ରାଜଭକ୍ତି ବିଶିଷ୍ଟ ହୋଇ ସାବଧାନରେ ରହ" । ପରେ ଭୀମ ସିଂହ ଓ ଲକ୍ଷ୍ମଣ ସିଂହଙ୍କୁ ଡାକି, ମଦନ ସିଂହଙ୍କୁ ଦେଖାଇ, "ମହାରାଜ ! ମଦନ ସିଂହ ମୋହର ଓ ମୋହର ଅଗ୍ରଜ ମାଧବ ସିଂହଙ୍କ ଏକମାତ୍ର ପୁତ୍ର । ଏହାକୁ ତୁମ୍ଭ ପୁତ୍ର ପରି ଭାବ-

Digitized by srujanika@gmail.com

ଦୋଷାଦୋଷ କ୍ଷମା କରି ରକ୍ଷା କରିବେ ।" ଏହିରୂପ କହି, ହାତରେ ହାତ ପକାଇ ମଦନ ସିଂହଙ୍କୁ ସମର୍ପଣ କରିଦେଲେ । ଏମନ୍ତ ସମୟରେ ପ୍ରତାପ ସିଂହ ବିଶେଷ କ୍ଲେଶ ପାଉଥିବାର ଦେଖି ଉପସ୍ଥିତ ସମସ୍ତ ବ୍ୟକ୍ତି "ରାମ, ରାମ" ଉଚ୍ଚାରଣ କରି ଶ୍ରୀହରି ସଂକୀର୍ତ୍ତନ ଆରମ୍ଭ କଲେ ଏବଂ ପ୍ରତାପ ସିଂହ ଭଗବତ୍ ଧ୍ୟାନ କରି ଲୋକାନ୍ତରକୁ ଗମନ କଲେ । ତତ୍ପରେ ଭୀମ ସିଂହ ମହୋତ୍ସବ କରାଇ ପ୍ରତାପଙ୍କ ଦାହ କ୍ରିୟାର ପରିଶେଷରେ ରାଜ ଶୂନ୍ୟସ୍ଥାନରେ ମଦନ ବସାଇଲେ । ମଦନ ସିଂହ ତାହାଙ୍କ ଉତ୍ତରକ୍ରିୟା ମହାସମାରୋହରେ କରାଇ ପିତୃଋଣ ବିମୁକ୍ତ ହୋଇ, ପିତୃ ବିୟୋଗ ସଞ୍ଜାତ ହେମଲତାର ବିଚ୍ଛେଦ ଘଟିଲା ବୋଲି ବିଶେଷ ଚିନ୍ତାଗ୍ରସ୍ତ ହେବାର ଦେଖି ମାତା ସୁବର୍ଣ୍ଣ ବାଈ କହିଲେ "ବାବୁ! ଏଥର ତୋର ବିବାହ କରି ନିଜ କୁଳ ରକ୍ଷା କରିବା କର୍ତ୍ତବ୍ୟ । ତୋହର ମନୋମୁଗ୍ଧକାରିଣୀ ହେମଲତା ବିଦ୍ୟମାନ ଥିବା ପକ୍ଷରୁ ତାହାକୁ ଆଣାଇ ତାହାର ପାଣିଗ୍ରହଣ କର ।" ଏହି ଅମୃତମୟ ବଚନାବଳୀ କର୍ଣ୍ଣ କୁହରରେ ପ୍ରବେଶ କରନ୍ତେ ମଦନ ସିଂହଙ୍କ ଚିନ୍ତାଭାର ହ୍ରାସ ହୋଇ ଅପାର ସୌଖ୍ୟ ଜାତ ହେଲା । କିନ୍ତୁ ହେମଲତା କେଉଁଠାରେ ଅଛି ତାହା ଜାଣି ନ ଥିବାରୁ ବିଷାଦ ମଗ୍ନ ହୋଇ ପରଦିନ ପ୍ରାତଃକାଳରେ କୁମାର ସିଂହଙ୍କୁ ଦେଖିବାକୁ ଚିଦାନନ୍ଦଙ୍କ ମଠକୁ ଗମନ କଲେ । କୁମାରସିଂହ ସେହିଦିନଠାରୁ ମଧ୍ୟ ମଠରେ ରହି ବାହାରିଗଲେ ବୋଲି ଯୋଗୀ କହନ୍ତେ ସିଂହ ଅଧିକତର ଚିନ୍ତାକୁଳିତ ହୋଇ ଗୃହକୁ ପ୍ରତ୍ୟାଗମନ କଲେ । ଯାଉଁ ଯାଉଁ ରାଜଦାଣ୍ଡରେ ଗୋଟିଏ ପାଲିଙ୍କି ଦୃଷ୍ଟ ହେଲା । ସେହି ପାଲିଙ୍କି ପଛରେ ଆସୁଥିବା ଜଣେ ପଞ୍ଚାଶ ବର୍ଷୀୟ ବୁଢ଼ା ପଠାଣ ମଦନ ସିଂହଙ୍କୁ ଚିହ୍ନିପାରି, "ହେ ମଦନ ସିଂହ ! ରହ, ରହ" ବୋଲି ଡାକିଦେଲା । ମଦନ ସିଂହ କିଞ୍ଚିତ୍ ଠିଆ ହୋଇ ସେହି ଲୋକଟିକୁ ଚିହ୍ନିଲେ । କିନ୍ତୁ ତାହାର ନାମ ବିସ୍ମରଣ ହୋଇଥିବାରୁ, ତାହା ସ୍ମରଣ କରିବାକୁ ଚେଷ୍ଟା କରୁଅଛନ୍ତି ଏମନ୍ତ ସମୟରେ ସେହି ବୁଢ଼ା ନିକଟବର୍ତ୍ତୀ ହୋଇ କହିଲା, "ବାବୁ ! ଆପଣ ମତେ ଚିହ୍ନିପାରିବେ ନାହିଁ । ମୋହର ନିବାସ ପାଣିଗ୍ରାମ; ନାମ ଅବ୍‌ଦୁଲ୍ କରିମ୍ ମୌଲବି; ଏହି ପାଲିଙ୍କିରେ ବସିଥିବା

ଲୋକ ବୃଦ୍ଧ ନାରାୟଣସିଂହ । ଏହାଙ୍କୁ ଆପଣ ସାଦରେ ଗ୍ରହଣ କରନ୍ତୁ ।" ଏହି କଥା ଶୁଣି ମଦନସିଂହ ଆନନ୍ଦିତ ହୋଇ ପାଇକ ନିଜ ଘରଠାକୁ ଘେନିଯାଇ, ନାରାୟଣସିଂହଙ୍କୁ ସଗୌରବରେ ଆଦରକରି, ହେମଲତାପାଇଁ ବିଶେଷ ଅନୁସନ୍ଧାନ କରୁଥିବା ଓ ସେ ଚକୋର ନଗରରେ ନଥିବା ବିଷୟ ତାହାଙ୍କୁ ଜଣାଇ, ସେମାନେ ପାଲି ଗ୍ରାମଠାରୁ ସେଠାକୁ କେଉଁପରି ଆସିଲେ ତାହା ବିଶଦରୂପେ ଜଣାଇବା ସକାଶେ ପ୍ରଶ୍ନ କଲେ । ରହିମାନଖାଁର ଦୌର୍ଜ୍ଜନ୍ୟ ହେତୁ ନିଜର କାରାଗୃହ ନିବାସ ହେବା, ରହିମାନଖାଁଙ୍କ ସ୍ଥାନେ ନିଯୁକ୍ତ ବ୍ୟକ୍ତି ତାଙ୍କପ୍ରତି ହିଂସା କରିବା, ସେ ପାଳଧି କରିଯାଇ ବ୍ୟାଘ୍ରମୁଖେ ପଡ଼ିବା, ଓ ଗ୍ରାମବାସିମାନେ ତାହାଙ୍କୁ କାରାମୁକ୍ତ କରି, ହେମଲତାକୁ ଖୋଜି ଖୋଜି ବାହିଁ ନପାଇବା, ଇତ୍ୟାଦି ବିଷୟ ବିଶଦରୂପେ ଜଣାଇଲେ ଏବଂ ନାରାୟଣସିଂହ କହିଲେ "ବାବୁ ! ହେମଚକୋର ନଗରରେ ଥିବବୋଲି, ମୌଲବୀଙ୍କୁ ସଙ୍ଗେ ଘେନି ଏହିଠାରେ ପ୍ରବିଷ୍ଟହେଲି । ଏହାଙ୍କ ସାହାଯ୍ୟରୁ ମୁଁ ଆପଦରୁ ମୁକ୍ତହେଲି । ଅନ୍ୟ ମତାବଲମ୍ବୀ ହେଲେ ସୁଦ୍ଧା ଏ ମହାତ୍ମା ମୋର କରିଥିବା ଉପକାର ମୁଁ କେବେ ଜନ୍ମରେ ହେଲେ ଶୁଝି ନପାରେ । ଆମ୍ଭ ହେମଲତା କେଉଁଠାରେ ନାହିଁ ବୋଲି ଆପଣ କହୁଅଛନ୍ତି କି ? ଓହୋ ! ମୁଁ କିବୁଦ୍ଧି କରିବି ? ସେ ଏହିଠାରେ ଥିବବୋଲି ମୁଁ ବହୁତ ଆଶା କରି ଆସିଥିଲି । ଏଣିକି ମୋର ମୃତ୍ୟୁ ହେବା ଶ୍ରେୟସ୍କର । ଏହି ମୌଲବୀ ମତେ ବିଶ୍ୱାସ କରି, ଚକ୍ରବର୍ତ୍ତୀଙ୍କ ରାଜ୍ୟତ୍ୟାଗ କରି ଏହି ଚକୋର ନଗରରେ ନିବାସ କରିବାକୁ ସ୍ଥିରକରି ଆସିଅଛନ୍ତି । କାଳେ ମୋହର ମୃତ୍ୟୁ ସମ୍ଭବିଲେ ଆପଣ ଏହି ସାହେବଙ୍କୁ ଉପକାରି କରି ସେ ଏହିଠାରେ ରହିଲାପରି କରାଇବେ ।" ଏହିରୂପ ନାରାୟଣସିଂହ ଜଣାକରନ୍ତେ ମଦନସିଂହ ମୌଲବୀ ସାହେବଙ୍କୁ ଅଭୟ ଦେଇ, ହେମଲତାଙ୍କୁ ଖୋଜାଇବାର ସକଳ ବନ୍ଦୋବସ୍ତ କରାଇଲେ ।



Digitized by srujanika@gmail.com



## ବିଂଶ ଅଧ୍ୟାୟ ।



ତହିଁ ଅପରଦିନ ପୂର୍ବାହ୍ନ ରାଜ ଦରବାର ହେବ ବୋଲି ଭୀମସିଂହ ବିଜ୍ଞାପନ ଦେଲେ । ରାଜପୁତ ସଭ୍ୟମାନେ ଯଥା ସମୟରେ ଏକତ୍ରିତ ହୋଇ ଉଚିତାସନ-ରେ ଉପବେଶନ କଲେ । ଭୀମସିଂହ ଓ ମହାରାଣା ଲକ୍ଷ୍ମଣସିଂହ ସଭା ମଣ୍ଡପରେ ଉପସ୍ଥିତ ହୋଇ, ଯୁଦ୍ଧରେ ପ୍ରାଣଦାନ କରିଥିବା ବୀରଚୂଡ଼ାମଣିଙ୍କ ନିମିତ୍ତ ବିଶେଷ ଦୁଃଖ ପ୍ରକାଶ କରି ପ୍ରାଣପଣେ ଯୁଦ୍ଧ କରିଥିବା ଲୋକଙ୍କୁ ପୁରସ୍କାର ଓ ଉଚ୍ଚପଦାଦି ପ୍ରଦାନ କରି ସେମାନଙ୍କୁ ବିଶେଷ ଗୌରବ କଲେ । ବିଶେଷରେ ମଦନସିଂହଙ୍କ ଧୈର୍ଯ୍ୟ ଓ ସାହସକୁ ପ୍ରଶଂସା କରି ଶ୍ରୀ ରାଣା ବାହାଦୁର ତାହାଙ୍କୁ ପରଲୋକଗତ ପ୍ରତାପସିଂହଙ୍କ ସ୍ଥାନେ ସେନାନାୟକ ପଦରେ ଅଭିଷିକ୍ତ କଲେ । କିନ୍ତୁ ସେହି ସଭା ମଧ୍ୟରେ ପ୍ରତାପସିଂହ ନଥିବାରୁ ଦରବାର କ୍ଷୀଣପ୍ରଭ ହେବାର ଦେଖି ଏହି ଆନନ୍ଦଜନକ ସମୟରେ ସୁଦ୍ଧା ମଦନସିଂହ ଅତିଶୟ ଦୁଃଖିତ ଥିଲେ । ଏହି ଦରବାରୋତ୍ସବ ପ୍ରାୟ ସାଙ୍ଗ ହେବା ପୂର୍ବେ ଜଣେ ଦ୍ୱାବିଂଶତି ବର୍ଷ ବୟଃପ୍ରାପ୍ତ ଲାବଣ୍ୟପୁରୁଷ ଉତ୍ତମ ରାଜପୁତ ଠାଣରେ ରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ସେ ଇତିପୂର୍ବେ କେବେ ସଭାର ଅଧୀନଥିବାରୁ କେହି ତାହାଙ୍କୁ ଉଚିତ ଗୌରବ ନକରି ବିସ୍ମୟ ହେଉଥିବା ସମୟରେ ଭୀମସିଂହ ତାହାଙ୍କୁ ଆସନ ଗ୍ରହଣ କରିବାକୁ ଆଦେଶ ଦେଲେ । ମଦନସିଂହ ପ୍ରମୁଖ କତିପୟ ସଭ୍ୟ ତାହାଙ୍କୁ ଇତିପୂର୍ବେ କେବେ ଦେଖିଥିଲା ପରି ଅନୁମାନ କଲେ — ଏମନ୍ତ ସମୟରେ ସେହି ନବାଗତ ପୁରୁଷ ଆସନରୁ ଉଠି ନିଜ ବୃତ୍ତାନ୍ତ ଶ୍ରବଣ କରିବାପାଇଁ ସଭାସଦ୍‌ବର୍ଗଙ୍କୁ ପ୍ରାର୍ଥନା କରି କହିଲେ "ହେ ରାଜପୁତବର୍ଗ ! ମୋହର ଜୀବନଚରିତ ଶ୍ରବଣ କରନ୍ତୁ । ମୁଁ ସମ୍ଭ୍ରାନ୍ତ ରାଜବଂଶରେ ଜନ୍ମଗ୍ରହଣ କରିଅଛି । ବାଲ୍ୟାବସ୍ଥାରେ

Digitized by srujanika@gmail.com

ମୋହର ଜନନୀ ମରଣ ପ୍ରାପ୍ତ ହେବାରୁ ମୁଁ ମାଉଳାଦ୍ୱାରେ ପ୍ରୟାଗ ନଗରରେ ପ୍ରତିପାଳିତ ହେଲି । ମୋହର ଜନ୍ମସ୍ଥାନ ରାଜସ୍ଥାନ ଅନ୍ତର୍ଗତ ଜୟପୁର ହେଲେହେଁ ଦିଲ୍ଲି ଶାସନାଧୀନସ୍ଥ ପ୍ରଦେଶରେ ଥିବାଯୋଗୁଁ ଜଲାଲୁଦ୍ଦୀନ୍ ଚକ୍ରବର୍ତ୍ତୀଙ୍କ ସେନାନାୟକ କାର୍ଯ୍ୟରେ ନିଯୁକ୍ତ ହୋଇ, ବିଂଶତି ବର୍ଷ ବୟସ ହେବା ପୂର୍ବେ ସେହି ଚକ୍ରବର୍ତ୍ତୀଙ୍କ ଅନୁଗ୍ରହରେ ଉଚ୍ଚପଦ ପ୍ରାପ୍ତହେଲି । ମୋହର ମାତାଙ୍କ ମରଣାନନ୍ତର ଜୟପୁରବାସୀ ମୋହର ପିତା ଦ୍ୱିତୀୟ ବିବାହ କଲେ କିନ୍ତୁ ଦୁର୍ଦ୍ଦୈବବଶତଃ ଦ୍ୱିତୀୟ ପତ୍ନୀ ଓ ତାହାଙ୍କ ଅପତ୍ୟାଦି ମୃତ୍ୟୁ ଲଭନ୍ତେ, ବିରାଗୀ ହୋଇ ପ୍ରୟାଗଠାରୁ ଆସି ଆମ୍ଭ ମାଉଳଙ୍କ ପ୍ରୋତ୍ସାହନରେ ଚକ୍ରବର୍ତ୍ତୀଙ୍କ ଅଧୀନରେ ସେନାଧିପତି କାର୍ଯ୍ୟ ପ୍ରାପ୍ତ ହେଲେ । ଅଲାଉଦ୍ଦୀନ ଦକ୍ଷିଣଦେଶ ଦିଗ୍ ଯାତ୍ରାରୁ ଲେଉଟି ଆସି, ଜଲାଲୁଦ୍ଦୀନଙ୍କୁ ବଧ କରି ନିଜେ ଚକ୍ରବର୍ତ୍ତୀ ହେବାକୁ ବାଞ୍ଛାକରି, ଉକ୍ତ ବିଷୟରେ ସାହାଯ୍ୟ କରିବା ଲାଗି ମତେ ଓ ମୋହ ପିତାଙ୍କୁ ଅନୁରୋଧ କଲା । ଆମ୍ଭେ ତାହାକୁ ବିଶେଷ ନିବାରଣ କଲୁଁ । ସେ କ୍ରୁଦ୍ଧ ହୋଇ ନିଜ ଦୁଷ୍ପ୍ରବୃତ୍ତି ଖଣ୍ଡନରେ ମୋହ ପିତାଙ୍କ ଚକ୍ଷୁଦ୍ୱୟ ନଷ୍ଟ କରି ମତେ ବଧକରିବା ସକାଶେ ଚେଷ୍ଟାକଲା । କିନ୍ତୁ ସେହି ଆପଦରୁ ନିଜ କୌଶଳରେ ଉଦ୍ଧାର ପାଇ ମୁଁ ଦେଶାନ୍ତରକୁ ପଳାୟନ କଲି । ଏହି ଘଟଣାର ଦୁଇବର୍ଷ ପୂର୍ବେ ମୋହର ପତ୍ନୀ ପରଲୋକଗତ ହୋଇଥିଲେ । ତାହାଙ୍କର ଗୋଟିଏ ସାତ ଆଠ ବର୍ଷର କନ୍ୟାଥିଲା । ସେହି କନ୍ୟାଟିକୁ ଘରେ ଛାଡି ଦେଇ ମୁଁ ଛଦ୍ମବେଶ ଧାରଣକରି ଦେଶାନ୍ତର ବାହାରଗଲି । ଦୁରାତ୍ମା ମୋହଠାରେ ଏତେ ଦ୍ରୋହ କରିଥିବାରୁ, ଯେ କୌଣସି ଉପାୟରେ ହିନ୍ଦୁ ରାଜା ମାନଙ୍କୁ, ପ୍ରୋତ୍ସାହିତ କରି ଅଲାଉଦ୍ଦୀନଙ୍କ ପ୍ରତି ଯୁଦ୍ଧଯାତ୍ରା କରାଇବାକୁ କୃତସଙ୍କଳ୍ପ ହେଲି । ତତ୍ପରେ ଦକ୍ଷିଣ ଦେଶକୁ ଯାଇ ମହାରାଷ୍ଟ୍ରୀୟ ରାଜା ରାମଦେବ ଆପଣଙ୍କୁ ସାହାଯ୍ୟ କରିବା ଲାଗି ସକଳ ବନ୍ଦୋବସ୍ତ କରାଇ, ତାହାଙ୍କଠାରୁ ବିଦାୟ ହୋଇ ଫେରିଅସୁଥିଲି । ମାର୍ଗମଧ୍ୟରେ ମଥୁରାନଗର ଠାରେ ଗୋଟିଏ ଭଗ୍ନ ଦେବାଳୟରେ ଯୋଗୀବେଶ ଧାରଣକରି ଅବସ୍ଥାନ କରିଥିଲି — ଏମନ୍ତ ସମୟରେ ଦୁଷ୍ଟ ରହିମାନ ଖାଁନର ସେବକମାନେ ମତେ ବନ୍ଧନ କରି ଯମୁନା ନଦୀ ସ୍ରୋତରେ ଭସାଇ ଦେଇ ସେହି ପତ୍ରଗୁଡ଼ିକ

Digitized by srujanika@gmail.com

ଅପହରଣ କଲେ । ସନ୍ତରଣ ପଟୁ ହେବାଯୋଗୁଁ ଦୈବାନୁଗ୍ରହରୁ, ସେହି ଜଳ ଗର୍ତ୍ତରୁ ଉଦ୍ଧାର ପାଇ, ଗୋସାଇଁ ବେଶ ଧରି ପାଲି ଗ୍ରାମକୁ ଯାଇ, ସେହିଠାରେ ମୋହର ପିତା ନାରାୟଣ ସିଂହ ଓ ପ୍ରିୟତମା-ଦୁହିତା ହେମଲତା ଜୀବିତ ଥିବାର ଦେଖି ଆଶ୍ୱାସିତ ହେଲି । 'ପାପିଷ୍ଠ ରହମାନ୍ ହେମଲତାକୁ କାରାବଦ୍ଧ କରିବାକୁ ଯତ୍ନ କଲାବେଳେ ତାହାଙ୍କୁ ରକ୍ଷା କରି ବୁନ୍ଦୀ ନଗରକୁ ନେଇ ଯାଇ ପୂର୍ବ ସ୍ନେହୀ ଶିବପ୍ରସାଦଙ୍କ ଘରଠାରେ ରଖାଇଲି । ତତ୍ପରେ ଚକ୍ରବର୍ତ୍ତୀ ରାଜସ୍ଥାନ ପ୍ରତି ଦଣ୍ଡ ଯାତ୍ରା କରିବାକୁ ଇଚ୍ଛା କରିଥିବାର ଶୁଣି, ଦିଲ୍ଲୀ ନଗରରେ ଟଳିବା ବୃତ୍ତାନ୍ତ ରାଜପୁତ ମାନଙ୍କୁ ଜଣାଇ ଦେବାକୁ ଇଚ୍ଛା କରି, କୁଲନ୍ଦର ଫକୀର ବେଶରେ ରହମାନ୍ ଖାଁନ୍ଠାରୁ ଚକ୍ରବର୍ତ୍ତୀଙ୍କ ଗୁପ୍ତାଲାପ ବୁଝି ପାରିଲି । ସେହି କାଳ ଅବଧି ମୁଁ ଏହି ନଗରରେ ଚିଦାନନ୍ଦ ଯୋଗୀ ବେଶ ଧାରଣ କରି ରାଜପୁତ୍ର ମାନଙ୍କ ଶ୍ରେୟ କାମନାରେ ନାନାବିଧ ତପସ୍ୟା କରିଅଛି । ସେଦିନ ରାଓ ଶ୍ରୀଲକ୍ଷ୍ମଣସିଂହ ମହାରାଜାଙ୍କୁ ମଦନ-ସିଂହଙ୍କ ସାହାଯ୍ୟରେ ରକ୍ଷାକରି, ବସନ୍ତ ଭଟ୍ଟଙ୍କୁ ନିହତ କରାଇ, ତାହାଠାରୁ ଜ୍ଞାନାନନ୍ଦ ସ୍ୱାମୀ ବେଶରେ ଚକ୍ରବର୍ତ୍ତୀର ଗୁପ୍ତ ପଷାଦ ଆଣିଥିବା ପାଣ୍ଡୁରଙ୍ଗ-ନାଥକୁ ଧରି ଆପଣଙ୍କୁ ସମର୍ପଣ କରିଅଛି । ମୁଁ ଅନେକ ସେବକଙ୍କୁ ରଖି, ଛଦ୍ମ ବେଶରେ ନାନାସ୍ଥାନକୁ ପ୍ରେରଣ କରି, ବସନ୍ତ ଭଟ୍ଟାଦିଙ୍କ ରହସ୍ୟ ଜାଣି ପାରି, ଆଜିଦିନ ଦୁରସ୍ତ ମାନଙ୍କ ପରାଜୟ ଦେଖି ସଫଳ ମନୋରଥ ହୋଇଅଛି । ମୋହର ନାମ ଜନାର୍ଦ୍ଦନସିଂହ । ହେମଲତା ମୋହର ଦୁହିତା, ଓ ଅନ୍ଧ ନାରାୟଣସିଂହ ମୋହର ପିତା ଅଟନ୍ତି । ହେମଲତା ବର୍ତ୍ତମାନ ମୋହ ନିକଟରେ ଅଛି କିନ୍ତୁ ମୋହ ପିତାଙ୍କ ଠିକଣା ଏପର୍ଯ୍ୟନ୍ତ ମତେ ଜଣା ନାହିଁ । ଯଦିକେହି ଜାଣନ୍ତି ମତେ ଜଣାଇ ମୋହର ଜୀବନ ଧନ୍ୟ କରଅ । ମଦନ ସିଂହଙ୍କୁ ମୋହର କନ୍ୟା ହେମଲତାକୁ ଦାନ କରିବ ।" ଜନାର୍ଦ୍ଦନ ସିଂହ ସଭ୍ୟମାନଙ୍କୁ ନିଜ ପୂର୍ବ ଚରିତ ଏହିରୂପ ଜଣାନ୍ତେ ସେମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ତାହାଙ୍କ ମୁଖକୁ ଅନାଇ ରହିଲେ । ହେମଲତା ଚିତୋର ନଗରରେ ଥିବା ଓ ତାହାକୁ ମଦନ ସିଂହଙ୍କୁ ପ୍ରଦାନ କରିବାକୁ ଜନାର୍ଦ୍ଦନ ସିଂହ ପ୍ରତିଶ୍ରୁତ ହେବା ବିଷୟ ମଦନ ସିଂହ ଶ୍ରବଣ କରି ହର୍ଷୋତ୍ଫୁଲ୍ଲିତ ହେଲେ । ନାରାୟଣ ସିଂହ ତାଙ୍କ

Digitized by srujanika@gmail.com

ଘରଠାରେ ଥିବାର ଜଣାଇ ଘରକୁ ଯିବାକୁ ତାହାଙ୍କୁ ପ୍ରାର୍ଥନା କଲେ । ଯେତେ ଶ୍ରୀକ ପାଳି ଗ୍ରାମଠାରୁ ଚଉୋର ନଗରକୁ କେଉଁରୂପେ ଅସି ପାରଲେ ଝେଁାଲ ବସ୍ତୁ ଲଭ ଦୀର୍ଘକାଳରୁ ଦେଖି ନଥିବା ପିତାଙ୍କୁ ଶୀଘ୍ର ଦର୍ଶନ କରିବାକୁ ଇଚ୍ଛା କରି ରାଣା ଓ ସଭାସଦ୍‌ବର୍ଗଙ୍କଠାରୁ ବିଦାୟ ନେଇ, ନିଜ ମଠକୁ ପ୍ରସ୍ଥାନ କରି ପାଲଙ୍କିରେ ହେମଲତାଙ୍କୁ ବସାଇ ମଦନ ସିଂହଙ୍କ ସହିତ ତାଙ୍କ ଘରଠାକୁ ଗମନ କଲେ । ସୁଦୀର୍ଘ କାଳରୁ ବିଚ୍ଛେଦ ଘଟିଥିବା ଆତ୍ମୀୟମାନଙ୍କ ଉତ୍ସବ ସମ୍ମିଳନ ସନ୍ଦର୍ଶନ କରିବାକୁ ଅଭିଳାଷ କରି ଗ୍ରାମ ସିଂହ, ଲକ୍ଷ୍ମଣ ସିଂହ ମହାରାଜା ଓ ଅନ୍ୟାନ୍ୟ ସଭ୍ୟମାନେ ମଦନ ସିଂହଙ୍କ ଗୃହଠାକୁ ବିଜେ କଲେ । ଅଦୃଷ୍ଟବାନ୍ ମଦନ ସିଂହ ନିଜ ଗୃହ ଅଲଂକୃତ କରିଥିବା ମହାରାଣା ପ୍ରଭୃତିଙ୍କୁ ଯଥାସାଧ୍ୟ ଗୌରବ ଓ ଅଭ୍ୟର୍ଥନା କଲେ । ପରେ ନିଜ ପ୍ରପୌତ୍ରୀଙ୍କୁ ନପାଇ ଦୁଃଖାତିଶଯ୍ୟ ଭୋଗ କରୁଥିବା ନାରାୟଣ ସିଂହଙ୍କ ନିକଟବର୍ତ୍ତୀ ହୋଇ କହିଲେ "ଅଜା ! ତୁମ୍ଭ ହେମଲତା ଅସିଲେ," । ନାରାୟଣ ସିଂହ ଏହି କଥା ଶୁଣି ଚଞ୍ଚଳିତ ହୋଇ, "ବାବୁ ! କାହିଁ ମୋ ହେମଲତା ? କାହିଁ ? ବାବୁ ! ସତ କହୁଅଛ, ଶୀଘ୍ର ସତ କଥା କହ;" ବୃଦ୍ଧ ଏହିରୂପେ ବ୍ୟସ୍ତ ସମସ୍ତ ହେଉ ଅଛନ୍ତି—ମେଘାବରଣରୁ ବିଦ୍ୟୁତ୍‌ବତ୍ ହେମଲତା ଅସି, "ଦାଦା ! ଦାଦା !" ବୋଲି ହାର୍ଦ୍ଦ ଆନନ୍ଦାଧିକ୍ୟ ହେତୁ ଉଦ୍‌ବେଳେ ପାଶରେ ଥିବା କଥା ବିସ୍ମରଣ କଲେ ଓ ଆନନ୍ଦାଶ୍ରୁ ବର୍ଷଣ ପୁରଃସର ବୃଦ୍ଧଙ୍କ କୋଳରେ ବସି, ତାହାଙ୍କୁ ଗାଢ଼ାଲିଙ୍ଗନ ପୂର୍ବକ ବିଳାପ କରିବାକୁ ଲାଗିଲେ । ନାରାୟଣ ସିଂହ ପ୍ରପୌତ୍ରୀକୁ କୋଳ କରି ଅଣ୍ଟୁପାଖରେ ତାହାଙ୍କ କେଶଗୁଚ୍ଛ ଛନ୍ଦାଇ "ମା ! ଏତେ ଦିନେ ତୋହର ମୁଖ ଦେଖିଲି । ଆହା ! ତୋହର ଜନ୍ମଦାତା ଥିଲେ ଯେତେ ଦେଖି କେଡ଼େ ସନ୍ତୋଷ ନହୁଅନ୍ତା !" ଏପରି ନାନାମତେ ନିଜର ସନ୍ତୋଷ ଓ ସନ୍ତାପ ବଚନ ଏବଂ ଅଙ୍ଗ—ଚେଷ୍ଟାଦି ଦ୍ୱାରା ପ୍ରକାଶ କଲେ । ଏହି ସମୟରେ ମଦନ ସିଂହ କହିଲେ, "ଅଜା ! ତୁମ୍ଭ ପୁଅ ଅସି ଅଛନ୍ତି, ଦେଖିବ କି ?" ଏହା ଶୁଣି ଇତିପୂର୍ବେ ଚନ୍ଦ୍ରବତୀ ନିଜ ପୁଅକୁ ବଧ କରିଥିବାର ଦୃଢ଼ ବିଶ୍ୱାସ ଥିବାରୁ ମଦନ ସିଂହଙ୍କ କଥା ବିଶ୍ୱାସ ନକରି, ବୃଦ୍ଧ କହିଲେ, "ବାବୁ ! ମତେ କାହିଁକି ହାସ୍ୟ କରୁଅଛ ? ମୋର ପୁଅ ଅଉ କାହିଁ ମିଳିବ ? ଅଉ ସେ

ଯେତେ ବଞ୍ଚିବ କପାଳ ? କାଙ୍ଗାଲୁଣୀକ ମରିବା ପୂର୍ବ ଘର ଅମ୍ଭ ଋଣାନୁବନ୍ଧନ ଶେଷ ହୋଇଅଛୁ । ତତ୍ପୁତ୍ର ପୁତ୍ରଶୋକ ମୋପରି ପାପିଷ୍ଠକୁ କେଉଁପରି ଭୋଗ-କରୁଅଛି । ହା ! ପୁତ୍ର, ଜନାର୍ଦ୍ଦନ ! ତତେ ଆଉ ପାଇବ ନାହିଁ ।" ବୃଦ୍ଧ ଏହିରୂପ କହି ଉଚ୍ଚୈଃସ୍ୱରରେ ରୋଦନାରମ୍ଭ କରନ୍ତେ ଜନାର୍ଦ୍ଦନ ସିଂହ ଅନ୍ତରରୁ ବାହାରି, କହିଲେ "ଦାଦା ! ରୋଦନ ଶୁଣି ମତେ ଚିହ୍ନିପାରୁନାହଁ ? ମୁଁ ଆପଣଙ୍କ ଜନାର୍ଦ୍ଦନ । ସେଦିନ ରାତ୍ର ମୁଁ ଅଲ୍ଲାଉଦ୍ଦୀନର ହାତରେ ନପଡ଼ି ଈଶ୍ୱରା-ନୁକୂଲ୍ୟରେ ପ୍ରାଣରକ୍ଷା ଓ ଶିବଙ୍କର ଉପାସକର ଛଦ୍ମବେଶ ଧାରଣକରି ଏତେକାଳ ନାନାଦେଶ ଭ୍ରମଣକରି, ସକଳ ତୀର୍ଥଯାତ୍ରା ସମାପନପୂର୍ବକ, ପରିଶେଷରେ ପାଳଗ୍ରାମକୁ ଆସି, ତୁମ୍ଭେ ଜୀବିତଥିବାର ଜାଣି ମନଃଶାନ୍ତି ଲଭି, ଅଦ୍ୟଦିନ ଆପଣଙ୍କ ସାକ୍ଷାତ କଲି ।" ନାରାୟଣ ସିଂହ କର୍ଣ୍ଣଦ୍ୱାରା ସେ ଜନାର୍ଦ୍ଦନ ସିଂହ ବୋଲି ସ୍ଥିରକରି, ତାହାଙ୍କୁ ପାଖକୁ ନେଇ ଅନିର୍ବଚନୀୟ ଆନନ୍ଦ ଲାଭକରି, କହିଲେ, "ବାବୁ ! ଚକ୍ରବର୍ତ୍ତୀ ମୋହର ଚକ୍ଷୁ ନଷ୍ଟକରିବା ପୂର୍ବେ ତତେ ଦେଖିଥିଲି । ତତେ ଚକ୍ଷୁରେ ଦେଖି ସନ୍ତୋଷ ହେବାକୁ ଆଉ ମୋହର ସେ ଚକ୍ଷୁ ନାହିଁ । ହେଲେହେଁ ତୁ ଓ ହେମଲତା ମୋହର ଦୁଇଚକ୍ଷୁ ଅଟ । ତୁମ୍ଭର ମିଳନରେ ଆଜି ମୋହର ଚକ୍ଷୁଦ୍ୱୟ ଲାଭହେଲା ।" ଏହିରୂପ କହି ବୃଦ୍ଧ ଅତି ଆନନ୍ଦରେ ବାତୁଳପ୍ରାୟ ହେଲେ । ଜନାର୍ଦ୍ଦନ ସିଂହ ହେମ-ଲତାକୁ ଶିବପ୍ରସାଦ ଘରଠାକୁ ନେଲାବେଳେ କମ୍ପା ନିଜ ମଠରେ ରହିବା ଦୁଇ-ଦିନ ମଧ୍ୟରେ, ଆପଣାର ପରିଚୟ ଦେଇନଥିଲେ । ଏଣୁ ପାଳଗ୍ରାମରେ ଜ୍ୱର ହେବା ସମୟରେ ରକ୍ଷରେଖା ବାନ୍ଧିବା ଗୋସାଇଁ ନିଜ ପିତା ବୋଲି ଜାଣି ନେଇ ଅଧୈର୍ଯ୍ୟ ହେଲେ । ହେମଲତାକୁ ଆଠବର୍ଷ ହେଲାବେଳେ ଜନାର୍ଦ୍ଦନ-ସିଂହ ତାହାଙ୍କୁ ଘରୁ ପଳାଇଥିଲେ । ବର୍ତ୍ତମାନ ସେ ପୂର୍ଣ୍ଣ ଯୌବନ ପ୍ରାପ୍ତ ହୋଇଥିଲେ ହେଁ ବହୁକାଳରୁ ଦେଖିନଥିବାରୁ ପରମାନନ୍ଦ ଲାଭକରି ତାହାଙ୍କୁ କୋଳାଗତ କଲେ ଏବଂ ମୁଖଚୁମ୍ବନ ନକରି ରହିପାରିଲେ ନାହିଁ । ପରେ ସୁବର୍ଣ୍ଣବାଈ ହେମଲତାକୁ ଦେଖିବାକୁ ଅତ୍ୟନ୍ତ ହେବାରୁ ଜନାର୍ଦ୍ଦନ ସିଂହ ତାହାଙ୍କୁ ଭିତରକୁ ପଠାଇଦେଲେ । ହେମଲତାର ସୌନ୍ଦର୍ଯ୍ୟ, ଏବଂ ମୁଖଶ୍ରୀରେ ସ୍ନିଗ୍ଧତା ଓ ବିନୟ ସମ୍ପତ୍ତି ସୂଚକ ଚିହ୍ନମାନ ଦେଖି, ତାହାଙ୍କୁ ପୁତ୍ରବଧୂ କରିବାକୁ

Digitized by srujanika@gmail.com

ସୁବର୍ଣ୍ଣବାଇ ବିଶେଷ ଇଚ୍ଛାକଲେ । ଏଣେ ମଦନ ସିଂହ ଜନାର୍ଦ୍ଦନ ସିଂହଙ୍କୁ ପଳାଇ ପଚାରିଲେ, "ବାବୁ ! ହେମଲତାର ସହୋଦର କୁମାର ସିଂହ କେଉଁଠାରେ ଅଛନ୍ତି ? ସେ ଦିନ ସେ ଆପଣଙ୍କ ମନକୁ ଚାଲେ ନାହିଁ କି ?" ସେ କହିଲେ, "ବାବୁ ! ଏହି ହେମଲତା ଉକ୍ତ କୁମାର ସିଂହ ଅଟେ । ଯୁଦ୍ଧ କୋଳାହଳ ସମୟରେ ଶତ୍ରୁ ହସ୍ତରୁ ଉଦ୍ଧାର ପାଇବା ନିମିତ୍ତ ହେମ ପୁରୁଷ ବେଶ ଧାରଣକରି ସଞ୍ଚାର କରୁଥିଲା ।" ହେମଲତାର ସମୟୋଚିତ ବୁଦ୍ଧି ଓ ବିବେଚନା ବିଷୟରେ ମଦନ ସିଂହ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ମଦନ ସିଂହଙ୍କ ପିତାଙ୍କ ସମ୍ମତି ପାଇଲେ ହେମଲତାକୁ ମଦନ ସିଂହଙ୍କୁ ପ୍ରଦାନ କରିବେବୋଲି ଜନାର୍ଦ୍ଦନ ସିଂହ ଭୀମସିଂହ, ଲକ୍ଷ୍ମଣ ସିଂହ ପ୍ରଭୃତିଙ୍କୁ ଜଣାଇଲେ । ମଦନ-ସିଂହଙ୍କ ପିତା ପରଲୋକ ଗମନ କରିଥିବାରୁ ଭୀମ ସିଂହ ତାଙ୍କ ଅଭିଭାବକ ସ୍ୱରୂପ ବିବାହୋପଯୋଗୀ ସକଳ କାର୍ଯ୍ୟ କରାଇଲେ ଏବଂ ବିବାହ ଦିବସ ପର୍ଯ୍ୟନ୍ତ ନାରାୟଣ ସିଂହ ଓ ଜନାର୍ଦ୍ଦନ ସିଂହଙ୍କୁ ନିଜ ଘରଠାକୁ ଆମନ୍ତ୍ରଣକରି ଘେନିଗଲେ । ସମ୍ପୂର୍ଣ୍ଣ ଶରଚ୍ଚନ୍ଦ୍ର ମଣ୍ଡଳକୁ ଉପହାସ କରୁଥିବା ହେମର ମୁଖାରବିନ୍ଦ ଅବଲୋକନ କରି, ତହିଁରେ ଚୁମ୍ବନ କରିବା, ଓ ତାହାଙ୍କ ବାହୁଲତିକାବତ୍ ଶରୀରରେ ନିଜ ଶରୀର ମିଳାଇବା ସୁସମୟ କେବେ ଆସିବ ବୋଲି ମଦନ ସିଂହ କ୍ଷଣକୁ ଯୁଗପ୍ରାୟ କାଳଯାପନ କରୁଥିଲେ । ସେଣେ ନବୀନ ଅଙ୍ଗ ପ୍ରାପ୍ତ ଅନଙ୍ଗବତ୍, କୃଷ୍ଣ କୌଷେୟ କୁଞ୍ଚିତ କେଶପାଶ ବିଶିଷ୍ଟ, ନୀଳୋତ୍ପଳୋପମ ନେତ୍ର ଓ ଚନ୍ଦ୍ରବଦନ ମୃଗଶାବପ୍ରାପ୍ତ, ନିଜ ହୃଦୟ ହାରକ ମଦନ ସିଂହଙ୍କ ସଙ୍ଗପ୍ରାପ୍ତ ହେବା ସଧନ ଅପେକ୍ଷାକରି ହେମଲତା ସଦା କାଳାତିପାତ କରିବାକୁ ଲାଗିଲେ । କେତେଦିନପରେ ସୁଦିନ ଓ ଶୁଭମୁହୂର୍ତ୍ତ ନିର୍ଦ୍ଧିଷ୍ଟ ହୋଇ, ଉପସ୍ଥିତ ଜନଙ୍କ ସମ୍ମୁଖରେ ଜନାର୍ଦ୍ଦନ ସିଂହ ହେମଲତାକୁ ମହାସମାରୋହରେ ମଦନସିଂହଙ୍କୁ ସମର୍ପଣକଲେ । ଭେରୀ ମୃଦଙ୍ଗାଦି ବାଦ୍ୟ ନାଦରେ ରାଜ ପୁର କମ୍ପିଉଠିଲା । ହେମଲତାଙ୍କ ବିବାହ ସମ୍ବାଦ ଶୁଣିବାରେ ପ୍ରୀତ ହୋଇ ଓ ପୂର୍ବେ ମଦନ ସିଂହଙ୍କ ପ୍ରତି ଦେଖିଥିବା ପ୍ରେମର ବଶହୋଇ ପଦ୍ମାଦେବୀ, ହେମକୁ ସମସ୍ତ ଆଭରଣ ପ୍ରଦାନ କରି ନିଜ ଘରର କନ୍ୟାପରି ବିବାହୋତ୍ସବ କରାଇଲେ । ଦେଖିବାଲୋକେ ବରକନ୍ୟାଙ୍କ ବିଶେଷ ପ୍ରଶଂସା କଲେ । ସାତଦିନ ପର୍ଯ୍ୟନ୍ତ ବିବାହୋତ୍ସବ

Digitized by srujanika@gmail.com

ମହା ସମାରୋହରେ ଚାଲିଲା । ମଦନ ସିଂହ ଏକପତ୍ନୀ ବ୍ରତ ପାଳନକର ସୁଶିକ୍ଷିତା ସ୍ନେହମୟୀ ଭାର୍ଯ୍ୟା ସାହଚର୍ଯ୍ୟରେ ଅପାର ସୌଖ୍ୟ ଲାଭକରି, ନାରାୟଣ ସିଂହ ଓ ଜନାର୍ଦ୍ଦନ ସିଂହଙ୍କ ସହିତ ସୁଖରେ କାଳଯାପନ କଲେ । ବିବାହ ହେବାର ଏକମାସପରେ ମଦନ ସିଂହ ଅବ୍‌ଦୁଲ୍‌କରିମ ମୌଲବୀଙ୍କୁ ରାମସିଂହ ସାକ୍ଷାତ କରାଇ, ସେ ମ୍ଳେଚ୍ଛ ରାଜ୍ୟ ତ୍ୟାଗକରି ଚିତୋର ଦେଶରେ ରହିବାକୁ ପ୍ରାର୍ଥନା କରୁଅଛନ୍ତି ବୋଲି ଜଣା କରନ୍ତେ ରାମ ସିଂହ ସନ୍ତୁଷ୍ଟ ହୋଇ ମାସିକ ପଞ୍ଚଦଶ ସ୍ୱର୍ଣ୍ଣମୁଦ୍ରା ବେତନରେ ତାହାଙ୍କୁ ନଯୁକ୍ତକର ସକୁଟୁମ୍ବେ ରହିବାକୁ ସକଳ ବନ୍ଦୋବସ୍ତ କରାଇଦେଲେ । ସେହିଦିନ ଅବଧି ମୌଲବୀ ଚିତୋର ମହାରାଣାଙ୍କ ମହାରାଜାଙ୍କ ଅଧୀନରେ ରହିଲେ ।

କିଛିଦିନ ପରେ ମଦନ ସିଂହ ଲୋକ ପଠାଇ ହେମଲତା ସୁଖରେ ଅଛନ୍ତି ବୋଲି ଶିବ ପ୍ରସାଦ ଓ ଚନ୍ଦ୍ରସେନଙ୍କୁ ଜଣାଇ ଦେଲେ । ଅପାର ସାହାଯ୍ୟ ପ୍ରଦାନ କରିଥିବା ଚନ୍ଦ୍ରାବତୀଙ୍କଠାକୁ ହେମଲତା ପତ୍ର ଲେଖି ପଠାଇଲେ । ହେମଲତା ମଦନ ସିଂହଙ୍କ ଅନୁରାଗ ପାଇ ବିବାହର ଦୁଇବର୍ଷପରେ ପୁତ୍ରବତୀ ହେଲେ । ସେହି ପୁତ୍ରକୁ ପ୍ରପିତାମହ ମାଧବ ସିଂହଙ୍କ ନାମ ଦେଇ ନାମ କରଣୋତ୍ସବ ବହୁ ଆଡ଼ମ୍ବର ସହକାରେ ଚଳାଇଲେ । କାଳକ୍ରମେ ତାହାଙ୍କର ଅନେକ ପୁତ୍ର କନ୍ୟା ହେଲେ । ମଦନ ସିଂହ ରାଜଭକ୍ତି ଜୀବନର ଏକମାତ୍ର ବ୍ରତ କରି, ନିଜ ପିତା ଓ ପିତୃବ୍ୟଙ୍କ ଅପେକ୍ଷା ଅଧିକ ପରାକ୍ରମ ଦେଖାଇ ସୁନାମ ଖ୍ୟାତି କରି, ଶତ୍ରୁକୁଳର ଶୂଳ ଓ ରାଣାଙ୍କ ପ୍ରାଣପିଣ୍ଡ ବୋଲାଇ, ପୁତ୍ରପୌତ୍ରାଦି ସହିତ ଲକ୍ଷ୍ମୀଙ୍କ ଆଲିଙ୍ଗନରେ ଉତ୍ତରୋତ୍ତର ଉନ୍ନତି ଲଭି ସୁଖଶାନ୍ତିରେ କାଳଯାପନ କଲେ ।



# ଶୁଦ୍ଧିପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୧୩ | ମାନିବର | ମାନଙ୍କର |
| | ୧୪ | ମ୍ଲେଚ୍ଛପତି | ମ୍ଲେଚ୍ଛପତିଙ୍କ |
| | ୮ | ଦେବାତ୍ମକ | ଦେବାତ୍ମକ |
| | ୧୧ | ଦେଖାଇ | ନ ଦେଖାଇ |
| ୬ | ୪ | ଏକ | ଏକ |
| ୯ | ୫ | କହ୍ନ ନଥିଲେ | କହୁ ନଥିଲେ |
| ୧୩ | ୧୪ | ଢୋବାରୁ | ଢେବାରୁ |
| ୧୪ | ୯ | ସକଳ୍ପ ଦର | ସଙ୍କଳ୍ପ କର |
| ୩୧ | ୩ | ଯାକତୀପୁ | କାକଟୀପୁ |
| ୪୫ | ୪ | ମାନ | ଗାନ |
| ୫୦ | ୪ | ପରଦ୍ୱତ | ପରଦ୍ୱାତ |
| ୫୦ | ୬୧ | କହୁଥିଲେ | କହିଲେ |
| ୫୧ | ୧୨ | ମଦନ ମିଙ୍କୁ | ମଦ... |
| ୫୧ | ୧୯ | ସକ୍ଷାତ | ସାକ୍ଷାତ |
| ୫୯ | ୧୧ | ଠିକର ରୂପେ | ଠିକର ରୂପେ |
| ୬୧ | ୮ | ଏବେ ସ୍ବୁଦ୍ଧା | ଏବେ |
| ୮୦ | ୧୦ | ବାହାକଙ୍କ | ବାହକଙ୍କ |
| ୮୩ | ୬ | ଯାଇ | ଯାଇ କହଲେ |
| ୮୪ | ୧୩ | ଦେଖାଇ | ଦେଖାଇଲେ |
| ୮୬ | ୧୧ | ଚଢ଼ୋରୁ | ଚଢୋର |
| ୯୬ | ୧୮ | କୋପଦ୍ୱୀପିତ | କୋପାଦ୍ଦୀପିତ |
| ୯୬ | ୨୧ | ଚତ୍ତୋର | ଚତ୍ତରେ |
| ୯୫ | ୧୬ | ଦୁରବସ୍ଥାର | ଦୁରବସ୍ଥାର |
| ୧୦୧ | ୬ | କଥାବାର୍ତ୍ତ | କଥାବାର୍ତ୍ତା |
| ୧୦୯ | ୧୮ | ସମ୍ବଲ | ସମ୍ବଳ |
| ୧୧୪ | ୧୩ | ସଭାଙ୍କ | ସଭାକୁ |
| ୧୧୬ | ୧୬ | କଲେ | କର |

Digitized by srujanika@gmail.com